# ଲେଖନୀର ପାଠଶାଳା

ଲେଖକ :

**ରାମକୃଷ୍ଣ ନନ୍ଦ**

ପ୍ରକାଶକ :

ଶ୍ରୀ ଶୁଭକାନ୍ତ ନନ୍ଦ
ସୌଦାମିନୀ ପ୍ରକାଶନୀ
ତେଲେଙ୍ଗାବଜାର
କଟକ - ୭୫୩୦୦୯

ପ୍ରଥମ ମୁଦ୍ରଣ : ୧୯୯୨

ମୁଦ୍ରକ :

ସଂସାର ପ୍ରେସ
ତେଲେଙ୍ଗାବଜାର
କଟକ - ୭୫୩୦୦୯

ମୂଲ୍ୟ : **ବାର ଟଙ୍କା**

# ସୂଚୀପତ୍ର

## କୃତଜ୍ଞତା

ପୁଣେରେ ରହୁଥିବା ବରିଷ୍ଠ ଅର୍ଥନୀତିଜ୍ଞ ଡକ୍ଟର ନୀଳକଣ୍ଠ ରଥ, ଶ୍ରଦ୍ଧେୟ କବି-ବନ୍ଧୁ ଶ୍ରୀ ରମେଶ ଚନ୍ଦ୍ର ଭଞ୍ଜ, କଲ୍ୟାଣୀୟ ଶ୍ରୀ ଲକ୍ଷ୍ମୀକାନ୍ତ ଖୁଣ୍ଟିଆଙ୍କ ସମେତ ଯେଉଁ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ପ୍ରେରଣା ମୋତେ ଏହି ପୁସ୍ତକ ପ୍ରଣୟନରେ ଉତ୍ସାହିତ କରିଛି, ସେମାନଙ୍କୁ ମୋର ଅନ୍ତରର କୃତଜ୍ଞତା ଜଣାଉଅଛି ।

**ଲେଖକ**

# ପୂର୍ବାଭାସ

ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆମ ଦେଶ ସ୍ୱାଧୀନ ହେବା ପରେ ପରେ ଶିକ୍ଷାର ଯେପରି ପ୍ରସାର ଘଟିଛି, ଛାପାଖାନା ଓ ମୁଦ୍ରିତ ପୁସ୍ତକାଦିର ସଂଖ୍ୟା ମଧ୍ୟ ସେହିପରି ବଢ଼ିଚାଲିଛି । କିନ୍ତୁ ଯେଉଁମାନେ ସ୍ୱାଧୀନତା ପୂର୍ବର ଛାପା ବହି ଓ ପତ୍ରପତ୍ରିକା ପଢ଼ିଥିବେ, ସେମାନେ ନିଶ୍ଚୟ ସ୍ୱୀକାର କରିବେ ଯେ ଏବର ମୁଦ୍ରିତ ପୁସ୍ତକ ଓ ପତ୍ରିକାଗୁଡ଼ିକରେ ଅଶୁଦ୍ଧିର ସଂଖ୍ୟା ବହୁତ ବେଶି । ବହି ସଂଖ୍ୟା ବଢ଼ିଲେ ଯେ ଅଶୁଦ୍ଧି ସେହି ଅନୁପାତରେ ବଢ଼ିବ, ଏହା ସୁସ୍ଥ ମନର ଯୁକ୍ତି ନୁହେଁ । ପୃଥିବୀର ଅତି ଉନ୍ନତ ଇଂରାଜୀ ଭାଷାର ଅବସ୍ଥା ବିଚାରକୁ ନେଲେ ଏହି ଯୁକ୍ତିର ଅସାରତା ସହଜରେ ପ୍ରମାଣିତ ହେବ । ତେବେ ଏଠାରେ ପ୍ରଶ୍ନ ଉଠୁଛି, କ୍ରମଶଃ ବଢ଼ି ଚାଲିଥିବା ଏହି ଅଶୁଦ୍ଧି ପ୍ରତି ଆମେ ଆଖି ବୁଜିଦେବା ନା ଏହାର ପ୍ରତିରୋଧ ପାଇଁ କିଛି ଉଦ୍ୟମ କରିବା ?

କୌଣସି ଶିକ୍ଷାସଚେତନ ବ୍ୟକ୍ତି ପ୍ରଥମ ମାର୍ଗଟିକୁ କଦାପି ସମର୍ଥନ କରିବେ ନାହିଁ । ମୁଦ୍ରିତ ପୁସ୍ତକ ଓ ପତ୍ରପତ୍ରିକାଦିରେ ଗୁଡ଼ାଏ ଭୁଲ୍ ରହିଯାଉଛି ଜାଣିବାପରେ କାହାକୁ ସୁଖ ଲାଗେନାହିଁ; କିନ୍ତୁ ସେତେବେଳକୁ ଆଉ ଉପାୟ ନ ଥାଏ । ଟେକାଟିଏ ହାତରୁ ଖସିଗଲେ ତାକୁ ଫେରାଇଆଣିବା ଯେପରି ଅସମ୍ଭବ, ଏ ସେହିପରି କଥା । ଏ ଅଶୁଦ୍ଧି-ବ୍ୟାଧି ପାଇଁ କୌଣସି ଔଷଧ ନାହିଁ । ପ୍ରତିଷେଧ ହିଁ ଏହାର ଏକମାତ୍ର ଫଳପ୍ରଦ ପ୍ରତିକାର । କିନ୍ତୁ ଏହା ଏତେ ସହଜ ନୁହେଁ କି ଜଣେ ଦୁଇଜଣର ବ୍ୟାପାର ନୁହେଁ । ଲେଖକ, ପ୍ରକାଶକ, ସମ୍ପାଦକ, ମୁଦ୍ରାକର ଏବଂ ଅଗଣିତ ପାଠକପାଠିକା ଏହି ଭାଷାଗତ ଅଶୁଦ୍ଧି ସହ ସଂପୃକ୍ତ ଥିବା ହେତୁ ସମସ୍ତଙ୍କର ଆନ୍ତରିକ ଏବଂ ସମ୍ମିଳିତ ଉଦ୍ୟମ କେବଳ ଏହି ବ୍ୟାଧିର ଗତିରୋଧ କରିପାରିବ ।

ଏ ସମସ୍ତଙ୍କୁ ଆଖିଆଗରେ ରଖି ଏ ପୁସ୍ତକଟି ପ୍ରସ୍ତୁତ କରାଯାଇଛି । ଯେଉଁ ସାଧାରଣ ଅଶୁଦ୍ଧିଗୁଡ଼ିକ ସଚରାଚର ଦେଖିବାକୁ ମିଳେ, ତାର ଶୁଦ୍ଧ ରୂପର କେବଳ ଏକ ତାଲିକା ନ ଦେଇ, ତାହା କାହିଁକି ଭୁଲ୍ ସଂକ୍ଷେପରେ ବୁଝାଇବାକୁ ଚେଷ୍ଟା କରାଯାଇଛି । କିନ୍ତୁ କେହି ଯେପରି ନ ଭାବନ୍ତୁ ଯେ ଲେଖାରେ ଓ ଛାପାରେ ଯେତେ

ଭୁଲ୍ ବାହାରିବ, ତାହା ଏଥିରେ ମିଳିବ । ମ୍ୟାଟ୍ରିକ୍ ପାସ୍ କରିଥିବା ଶିକ୍ଷକ ଯେଉଁଠି ଲେଖୁଛନ୍ତି ଭବିଶ୍ୟତ, ଉଚିତ, ବୈଜ୍ଞାନିକ, ସେଠି କେଉଁ ପୁସ୍ତକ ଏ ଅଶୁଦ୍ଧିର ସୀମା ଛୁଇଁପାରିବ ?

ଯେଉଁସବୁ କାରଣରୁ ଛପାରେ ଭୁଲ୍ ରହିଯାଉଛି, ତାହା ଏ ବହିରେ ସ୍ୱତନ୍ତ୍ର ଭାବରେ ଆଲୋଚିତ ହୋଇଛି । ପାଣ୍ଡୁଲିପି ପ୍ରସ୍ତୁତିଠାରୁ ଆରମ୍ଭ କରି ଛପାବେଳର ପ୍ରୁଫ୍ ସଂଶୋଧନ ପର୍ଯ୍ୟନ୍ତ ଯେଉଁ ଯେଉଁ ସ୍ତର ଦେଇ ବହି ଓ ଅନ୍ୟାନ୍ୟ ଛପା ଜିନିଷ ଯାଏ, ସେଠାରେ କି କି ସତର୍କତା ଅବଲମ୍ବନ କରିବାକୁ ହେବ, ତାର ଯଥାଯଥ ସୂଚନା ମଧ୍ୟ ଏଥିରେ ଦିଆଯାଇଛି ।

'ସଂସାର' ମାସିକ ପତ୍ରିକାର 'ଲେଖକର ପାଠଶାଳା' ବିଭାଗରେ ବିଭିନ୍ନ ସଂଖ୍ୟାରେ ଯାହା ସବୁ ପ୍ରକାଶ ପାଇଥିଲା, ଏ ବହିଟି କେବଳ ତାହାର ଏକ ସମଷ୍ଟି ନୁହେଁ । ଆଗ୍ରହୀ ଓ ଜିଜ୍ଞାସୁ ଛାତ୍ରଛାତ୍ରୀମାନଙ୍କ ପାଇଁ ଏଥିରେ ଅନ୍ୟ କେତୋଟି ବିଷୟ ମଧ୍ୟ ସଂଯୋଜିତ ହୋଇଛି, ଯାହା ସେମାନଙ୍କ ମାତୃଭାଷା ଓ ସାହିତ୍ୟ ଜ୍ଞାନକୁ ପରିପୁଷ୍ଟ କରିବ । ଛାତ୍ରମାନଙ୍କ ବ୍ୟତୀତ ଲେଖକ, ଶିକ୍ଷକ ଏବଂ ବିଶେଷ କରି ଛାପାଖାନାର ପ୍ରୁଫ୍‌ରିଡର୍ ମଧ୍ୟ ଏହାକୁ ପଢ଼ି ଯେପରି ଉପକୃତ ହେବେ, ସେଇ ଲକ୍ଷ୍ୟରେ ଏହାର ପରିକଳ୍ପନା । ଯଦି କୌଣସି ଶୁଭେଚ୍ଛୁ ପାଠକ ଏହି ପୁସ୍ତକର ବିଷୟବସ୍ତୁ ସମ୍ପର୍କରେ କିଛି ପରିବର୍ତ୍ତନ ବା ପରିବର୍ଦ୍ଧନର ସୂଚନା ଦିଅନ୍ତି, ତାର ଉପାଦେୟତା ବିଚାର କରାଯାଇ ପରବର୍ତ୍ତୀ ସଂସ୍କରଣରେ ନିଶ୍ଚୟ ତାହା କାର୍ଯ୍ୟକାରୀ କରାଯିବ ।

ଗ୍ର*ନ୍ଥ

# ଛାପାରେ ଭୁଲ୍ ରହେ କାହିଁକି

ଭାଷାକୁ ଦୁଇଟି ପର୍ଯ୍ୟାୟରେ ବିଚାର କରାଯାଇଥାଏ—କଥିତ ଭାଷା ଓ ଲିଖିତ ଭାଷା । କଥା କହିବାବେଳେ ଆମେ ଯେଉଁ ଭାଷା ବ୍ୟବହାର କରୁ, ତାହା ପ୍ରଥମ ଶ୍ରେଣୀର । ଅଶିକ୍ଷିତ ଲୋକମାନେ ଅଜ୍ଞତା ହେତୁ କଥାରେ ବେଳେ ବେଳେ ଗୁରୁତର ଭୁଲ୍ କରିପକାନ୍ତି : ଯଥା—ମୁଁ ଗତ ସନ ଏ ଟଙ୍କା ନିଶ୍ଚୟ ଶୁଝିଦେବି; କିମ୍ବା ଆପଣ ତ ନିଜେ ଦେଖିଚ, ମୁଁ ତାକୁ ଜଗିଥପାକ ଖୋଜିଲିଣି । କହିବାବେଳେ କେହି କେହି ଶିକ୍ଷିତ ବ୍ୟକ୍ତି ମଧ୍ୟ ଭୁଲ୍ କରନ୍ତି । ବେଳେ ବେଳେ କହିଦିଅନ୍ତି, 'ତା ଦୁରବସ୍ଥା କହିଲେ ନ ସରେ', 'ପିଲାଟି ହୃଷ୍ଟପୁଷ୍ଟ ହୋଇଛି' ଇତ୍ୟାଦି ।

କଥିତ ଭାଷା ଅପେକ୍ଷାକୃତ ଅମାର୍ଜିତ ଏବଂ ଅସ୍ଥାୟୀ, ମାତ୍ର ଲିଖିତ ଭାଷା ସ୍ଥାୟୀ ହୋଇଥିବା ଦୃଷ୍ଟିରୁ ଏହାକୁ ଶୁଦ୍ଧ ଏବଂ ମାର୍ଜିତ କରିବାର ଆବଶ୍ୟକତା ରହିଛି । କିନ୍ତୁ ଅତ୍ୟନ୍ତ ଦୁଃଖର ବିଷୟ ଏହି ଯେ ଖଣ୍ଡେ ନିମନ୍ତ୍ରଣ ପତ୍ର ମଧ୍ୟ ଆଜିକାଲି ଶୁଦ୍ଧ ଭାଷାରେ ଛପା ହୋଇପାରୁନାହିଁ । ଏପରି ହେଉଛି କାହିଁକି ?

ଅଧିକାଂଶ ଲୋକ ଭୁଲ୍ ଗୁଡ଼ାଏ ଦେଖିଲେ ଧରିନିଅନ୍ତି ଯେ ପ୍ରେସ୍ ବା ଛାପାଖାନା ଭୁଲ୍ କରି ଛାପିଦେଇଛି । ମାତ୍ର ଏହା ସବୁବେଳେ ସତ୍ୟ ନୁହେଁ । ପ୍ରେସ୍ 'ପରୀକ୍ଷା'କୁ 'ପରିକ୍ଷା' କରିଦେଇପାରେ, କିନ୍ତୁ 'ଲବ୍‌ଧପ୍ରତିଷ୍ଠ'କୁ 'ଲବ୍‌ଧ-ପ୍ରତିଷ୍ଠିତ' କିମ୍ବା 'ଦାରିଦ୍ର୍ୟ'କୁ 'ଦାରିଦ୍ର୍ୟତା' କରିଦେବ ନାହିଁ । ମୂଳ ଲେଖାରେ ମଧ୍ୟ ଭୁଲ୍ ରହିଥାଏ ।

କୌଣସି ଲେଖା ଛାପା ହେବା ପୂର୍ବରୁ ତିନୋଟି ସ୍ତର ଦେଇ ଆସିବାର କଥା— ମୂଳ ପାଣ୍ଡୁଲିପି, ସଂଶୋଧିତ ବା ସମ୍ପାଦିତ ଲେଖା ଓ ଛାପାଖାନାର ପ୍ରୁଫ୍ । ବର୍ତ୍ତମାନ ଏ ତିନୋଟି ସ୍ତର କଥା ଆଲୋଚନା କରିବା ।

ମୂଳ ଲେଖକ ଯଦି ପ୍ରକୃତରେ ବିଜ୍ଞ ବ୍ୟକ୍ତି ହୋଇଥାନ୍ତି ଓ ନିଜ ହାତରେ ଲେଖାଟି ପ୍ରସ୍ତୁତ କରିଥାନ୍ତି, ତେବେ ଅଶୁଦ୍ଧିର ଭୟ ବହୁତ କମିଯାଏ । କିନ୍ତୁ ଦୁଃଖର କଥା, ଅଳ୍ପ ଜ୍ଞାନବିଶିଷ୍ଟ ଅନେକ ଲୋକ ଆଜିକାଲି ଲେଖକ ଓ ସାହିତ୍ୟିକ

ହେବାକୁ ବ୍ୟାକୁଳ । ତେଣୁ ସେମାନେ କାହାର ମତାମତକୁ ଅପେକ୍ଷା ନ କରି, କୌଣସି ପଣ୍ଡିତ ବ୍ୟକ୍ତିଙ୍କଦ୍ୱାରା ଲେଖାକୁ ସଂଶୋଧିତ ନ କରାଇ ପଇସା ଖର୍ଚ୍ଚ କରି ବହିଟିକୁ ଛାପିବାକୁ ଉଦ୍ୟତ ହୁଅନ୍ତି । ଫଳରେ ପାଣ୍ଡୁଲିପିଟି ପ୍ରମାଦପୂର୍ଣ୍ଣ ରହିଯାଏ ।

## ପାଣ୍ଡୁଲିପି ପ୍ରସ୍ତୁତ :

ପାଣ୍ଡୁଲିପି ଯେତେ ସ୍ପଷ୍ଟ ଓ ସୁପାଠ୍ୟ ହେବ, ଛପା ସେତେ ନିର୍ଭୁଲ ଓ ସହଜ ହେବ । ସାଧାରଣତଃ କାଗଜର ଗୋଟିଏ ପାଖରେ ଉତ୍ତମ ଅକ୍ଷରରେ ଏହା ଲେଖାଯିବା ଉଚିତ । ଯେଉଁ କାଗଜରେ ବିଷୟଗୁଡ଼ିକ ଲେଖାହୋଇଥିବ, ସେଗୁଡ଼ିକ ଏକା ଆକାରରେ କଟା ଯାଇଥିଲେ ସୁବିଧା ହୁଏ । ପୃଷ୍ଠାଗୁଡ଼ିକରେ ଲେଖକ କ୍ରମିକ ସଂଖ୍ୟା ଦେଇଥିବେ । ସେଥିରେ ଯଦି ନାମବାଚକ ଶବ୍ଦ କିଛି ଥାଏ, ତେବେ ତାହା ସ୍ପଷ୍ଟ ଭାବେ ଲେଖାଥିବା ଦରକାର, ଯେହେତୁ ଅଭିଧାନରେ ତାହା ମିଳେ ନାହିଁ । ଲେଖୁ ଲେଖୁ ଯଦି କୌଣସି ଅକ୍ଷର ବା ସଂଖ୍ୟା ଭୁଲ୍ ହୋଇଗଲା, ତେବେ ତା'ରି ଉପରେ ତାକୁ ସଂଶୋଧନ ନ କରି କାଟି ଦିଅନ୍ତୁ ଏବଂ ଆଉ ଥରେ ଲେଖନ୍ତୁ, ଯେପରି କଂପୋଜିଟର ବା ପ୍ରୁଫ୍‌ରିଡର୍ ସନ୍ଦେହରେ ନ ପଡ଼ନ୍ତି । ଆବଶ୍ୟକ ସଂଶୋଧନ ପାଇଁ ପ୍ରତି ପୃଷ୍ଠାର ବାମ ଧାରେ ପଟେ କିଛି ହାସିଆ (margin) ଛାଡ଼ିଥାନ୍ତୁ ।

## ପରବର୍ତ୍ତୀ ପର୍ଯ୍ୟାୟ :

ପରବର୍ତ୍ତୀ ପର୍ଯ୍ୟାୟ ହେଲା ସଂପାଦନା ବା ପାଣ୍ଡୁଲିପି ସଂଶୋଧନ । ବହି ହେଉ ବା ପତ୍ରିକା ହେଉ କିମ୍ବା ଅନ୍ୟ ଯାହା କିଛି ହେଉ, ପ୍ରେସକୁ ଯିବା ପୂର୍ବରୁ ଉପଯୁକ୍ତ ବ୍ୟକ୍ତିଙ୍କ ଦ୍ୱାରା ତାହା ସଂଶୋଧିତ ଓ ପରିମାର୍ଜିତ ହେବା ଆବଶ୍ୟକ । ଏହି ସ୍ତରରେ ବର୍ଣ୍ଣାଶୁଦ୍ଧି, ବ୍ୟାକରଣଗତ ଓ ତଥ୍ୟଗତ ତ୍ରୁଟିମାନ ସଂଶୋଧିତ ହୋଇଯାଏ । ଏଥିପାଇଁ ଅବଶ୍ୟ ଉତ୍ତମ ଭାଷାଜ୍ଞାନ ଥିବା ବିଜ୍ଞ ସଂପାଦକ ଆବଶ୍ୟକ । ସେଭଳି ଯୋଗ୍ୟ ବ୍ୟକ୍ତି ଯେ ଓଡ଼ିଶାରେ ନାହାନ୍ତି, ତାହା ନୁହେଁ; କିନ୍ତୁ ସାଧାରଣତଃ ସେମାନଙ୍କ ସାହାଯ୍ୟ ଖୋଜାଯାଏ ନାହିଁ । ପ୍ରକାଶକମାନେ ଏ ଦିଗରେ ଉଦାସୀନ ଏବଂ ବ୍ୟୟ କରିବାକୁ କୁଣ୍ଠିତ ।

ଏଥର ଆସନ୍ତୁ ତୃତୀୟ ପର୍ଯ୍ୟାୟରେ କଣ ହେଉଛି ଦେଖିବା । ପାଣ୍ଡୁଲିପିଟି ଛାପାଖାନାକୁ ଆସିବାପରେ ତାହା ପ୍ରଥମେ 'କଂପୋଜ୍' ହୁଏ, ଅର୍ଥାତ୍

ପାଠ ଅନୁସାରେ ଅକ୍ଷରଯୋଡ଼ା କାମ ଆରମ୍ଭ ହୁଏ । ଏହା ହାତରେ ଅଥବା ଯାନ୍ତ୍ରିକ ପଦ୍ଧତିରେ ହୋଇପାରେ । କଂପୋଜିଟର୍‌ମାନେ ଅକ୍ଷର ଯୋଡ଼ ସାରି ତାର ଏକ ଛପା ବା ପ୍ରୁଫ୍ ଉଠାନ୍ତି । ଏହି ପ୍ରୁଫ୍‌ଟିକୁ ପ୍ରେସ୍‌ର ପ୍ରୁଫ୍ ରିଡର୍ ମୂଳ କପି ବା ଲେଖା ସଙ୍ଗେ ମିଳାଇ ସଂଶୋଧନ କରିଥାନ୍ତି । ଏହାପରେ ଜଣେ ବରିଷ୍ଠ କଂପୋଜିଟର୍, ଯାହାଙ୍କୁ ସଂଶୋଧକ କୁହାଯାଏ, ଏହି ଖଞ୍ଜା ଅକ୍ଷରକୁ ସଙ୍କେତ ଅନୁସାରେ ସଂଶୋଧନ କରି ପୁଣି ଏକ ପ୍ରୁଫ୍ ଉଠାନ୍ତି । ଏହି ଦ୍ୱିତୀୟ ପ୍ରୁଫ୍‌ଟି ଅଫିସ୍‌ରେ ମିଳାଯିବା ପରେ ଯଦି କିଛି ତ୍ରୁଟି ରହିଯାଇଥାଏ, ତାହା ଦ୍ୱିତୀୟଥର ସଂଶୋଧିତ ହୁଏ ଏବଂ ଛପା ହେବାକୁ ଯାଏ । ଛପାକଳରୁ ବାହାରୁଥିବା କାଗଜ ଶେଷଥର ଦେଖା ହେବା ପରେ ଛପାକାର୍ଯ୍ୟ ଚାଲେ ।

ଏତେ ସଂଶୋଧନ ପରେ ଓଡ଼ିଆ ଛପାରେ ତେବେ ଭୁଲ୍ ରହିଯାଉଛି କାହିଁକି ? ବିଦେଶୀଗତ ଇଂରାଜୀ ବହିରେ ଭୁଲ୍ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଠାରେ ଲେଖକ, ସମ୍ପାଦକ ଓ ପ୍ରେସ୍ କର୍ମଚାରୀମାନେ ପ୍ରାୟ ସମସ୍ତେ ଶିକ୍ଷିତ । ତଥାପି ମନୁଷ୍ୟର ଆଖିକୁ ଠକ ଦେଇ ଯେଉଁ କାଁ ଭାଁ ଗୋଟାଏ ଅଧେ ଭୁଲ୍ ରହିଯାଏ, ତାହା କ୍ଷମଣୀୟ; କାରଣ ମନୁଷ୍ୟ ଆଖି ତ ଆଉ ଯନ୍ତ୍ର ନୁହେଁ । ସେଥିପାଇଁ ଇଂରାଜୀରେ ମୁଦ୍ରଣଦୋଷକୁ **Printer's Devil** (ମୁଦ୍ରାକରର ସଇତାନ) କହନ୍ତି ।

ଓଡ଼ିଶାର ପ୍ରେସ୍‌ରେ କାମ କରୁଥିବା କଂପୋଜିଟରମାନେ ସାଧାରଣତଃ ଅଳ୍ପଶିକ୍ଷିତ; ଅପର ପ୍ରାଇମେରୀ ବା ମାଇନର ପାସ୍ କରିଥାନ୍ତି । କ୍ୱଚିତ୍ ମ୍ୟାଟ୍ରିକ୍ ଯାଏ ଯାଇଥାନ୍ତି । ତେଣୁ ମୂଳ ଲେଖାରେ ଭୁଲ୍ ଥିଲେ ତାକୁ ସଂଶୋଧନ କରିବା ଜ୍ଞାନ ସେମାନଙ୍କର ନ ଥାଏ । ସେ କାମ କରିବାକୁ ଯେଉଁ ସ୍ୱତନ୍ତ୍ର ପ୍ରୁଫ୍‌ରିଡର୍ ଥାନ୍ତି, ସେମାନେ ଯେ ସମସ୍ତେ ନିଜ ବିଦ୍ୟାରେ ଅଭିଜ୍ଞ, ତା ନୁହେଁ । କୌଣସି ବନାନରେ ସନ୍ଦେହ ହେଲେ ଅଭିଧାନ ଦେଖିବାର କଷ୍ଟ ବି ସ୍ୱୀକାର କରନ୍ତି ନାହିଁ । କାହିଁକି ବା କରିବେ ? ପାଣ୍ଡୁଲିପିରେ ଯାହା ଅଛି, ତାହା ଛପିଦେଲେ ତାଙ୍କ ଦାୟିତ୍ୱ ଶେଷ । ବିଶ୍ୱବିଦ୍ୟାଳୟର ଡିଗ୍ରୀଧାରୀ ବ୍ୟକ୍ତି ଯେଉଁଠି ଲେଖୁଛନ୍ତି 'ମୁଖ୍ୟ', 'ବିଶ୍ୱସ୍ତ', 'ପତ୍ରୀକା' ଓ 'ଭୁବନେଶ୍ୱର', ସେଠାରେ ସେମାନଙ୍କଠାରୁ କଣ ବା ଆଶା କରାଯିବ ? ଅଳ୍ପ କେତେକ ଦାୟିତ୍ୱଜ୍ଞାନସମ୍ପନ୍ନ ଛପାଖାନାକୁ ଛାଡ଼ିଦେଲେ ଅନ୍ୟ ସବୁଠାରେ ଏହି ଅବସ୍ଥା ।

ଏଇ ସବୁ କାରଣରୁ ଆମର ଛାପା ·ବହି ଓ ପତ୍ରିକାରେ ଅଶୁଦ୍ଧି ବଢ଼ି ବଢ଼ି ଚାଲିଛି । ଯେଉଁ ତିନୋଟି ସ୍ତର କଥା ପୂର୍ବରୁ କୁହାଗଲା, ସେଥିପ୍ରତି ଯଥୋଚିତ ଦୃଷ୍ଟି ଦିଆ ନ ଗଲେ ଓଡ଼ିଆରେ ଶୁଦ୍ଧ ମୁଦ୍ରଣ ଆଶା କରିବା ବିଡ଼ମ୍ବନା ।

ଛାପାରେ ଭୁଲ୍ ବାହାରିବାର ଅନ୍ୟ ଏକ କାରଣ ହେଲା ଫଳାମାତ୍ରା ଭାଙ୍ଗିଯିବା । ଛାପାଖାନାରେ ବ୍ୟବହୃତ ଅକ୍ଷର ବା 'ଟାଇପ୍' ସବୁ ସୀସାରେ ତିଆରି । ଓଡ଼ିଆ ଅକ୍ଷରରେ ଲାଗୁଥିବା ଫଳାମାତ୍ରାଗୁଡ଼ିକ ଏତେ ଛୋଟ ଛୋଟ ଯେ ବେଳେ ବେଳେ କଳରେ ଛାପା କାର୍ଯ୍ୟ ଚାଲିଥିବାବେଳେ ତାହା ଭାଙ୍ଗିଯାଏ । ସୀସାରେ 'ଆଣ୍ଟିମନି'ର ଭାଗ କମ୍ ଥିଲେ ଏବଂ ସେହି ନିକୃଷ୍ଟ ସୀସାରେ ଅକ୍ଷର ତିଆରି ହୋଇଥିଲେ ଏ ବିପଦ ଅଧିକ ଘଟେ । ଏ କ୍ଷେତ୍ରରେ ଏକମାତ୍ର ପ୍ରତିକାର ହେଉଛି ଅଫସେଟ୍ ପ୍ରଣାଳୀରେ ମୁଦ୍ରଣ । ଯଦି ସେ ସୁବିଧା ନ ଥାଏ, ତେବେ ଛାପା କାର୍ଯ୍ୟ ଚାଲିଥିବାବେଳେ ମଝିରେ ମଝିରେ ମୁଦ୍ରିତ କାଗଜକୁ ଆଣି ପରୀକ୍ଷା କରିବା ଦରକାର ।

ପୂର୍ବର ମୁଦ୍ରାକରମାନେ ଏ ଜାତୀୟ ବିପଦରୁ ରକ୍ଷା ପାଇବାପାଇଁ ଫଳାମାତ୍ରା ଯୋଡ଼ା ଯାଉଥିବା ଅକ୍ଷରକୁ ବିକଳ୍ପ ରୂପ ଦେଇ ସେଗୁଡ଼ିକୁ ଗୋଟିକିଆ ଅକ୍ଷରରୂପେ ତିଆରି କରାଉଥିଲେ; ଯଥା, କି, ତି, କ୍ରୁ, ତ୍ର, ର୍ବ, ନୃ, ମୃ ବଦଳରେ କି, ତି, କ୍ରୁ, ତ୍ର, ର୍ବ, ନୃ, ମୃ ପ୍ରଭୃତି । ଏଗୁଡ଼ିକ ପ୍ରାୟ ଭାଙ୍ଗେ ନାହିଁ । ଇଂରାଜୀ ଅକ୍ଷରରେ ଫଳାମାତ୍ରା ନ ଥିବାରୁ ଛାପାରେ ଏଭଳି ତ୍ରୁଟି ଦେଖାଯାଏ ନାହିଁ । ଏଥିରୁ ରକ୍ଷା ପାଇବାପାଇଁ ଆଜିକାଲି ନୂଆ ନୂଆ ମୁଦ୍ରଣ ପଦ୍ଧତି ପ୍ରବର୍ତ୍ତନ କରାଯାଉଅଛି, କିନ୍ତୁ ସେଗୁଡ଼ିକ ଅପେକ୍ଷାକୃତ ବ୍ୟୟବହୁଳ ଥିବାରୁ ସମସ୍ତେ ତାହା ଗ୍ରହଣ କରିନାହାନ୍ତି ।

ଛାପା ଓଡ଼ିଆ ବହିରେ ରହୁଥିବା ଅଶୁଦ୍ଧିର କାରଣ ସଂପର୍କରେ ଉପରେ ଯାହା ସବୁ କୁହାଗଲା, ତା' ମଧ୍ୟରେ ପ୍ରୁଫ୍ ସଂଶୋଧନର ଭୂମିକା ମୁଖ୍ୟ । ତେଣୁ ଏ ପୁସ୍ତକର ଏକ ସ୍ୱତନ୍ତ୍ର ଅଧ୍ୟାୟରେ ତାହା ଆଲୋଚନା କରାଯାଇଅଛି ।



# କେତେକ ସାଧାରଣ ଅଶୁଦ୍ଧି

## ( କ ) ଶବ୍ଦ

ଖୋଜିବାକୁ ସହଜ ହେବ ବୋଲି କେତେକ ସାଧାରଣ ଅଶୁଦ୍ଧିକୁ ଏଠାରେ ବର୍ଣ୍ଣାନୁକ୍ରମରେ ଦିଆଯାଇ ବନ୍ଧନୀ ଭିତରେ ତା'ର ଶୁଦ୍ଧ ରୂପ ଦିଆଯାଇଛି ଏବଂ ପ୍ରତ୍ୟେକ ଶବ୍ଦ ଶେଷରେ ଅଶୁଦ୍ଧିର କାରଣ ସମ୍ବନ୍ଧରେ ଆଲୋଚନା କରାଯାଇଛି ।

ସର୍ବପ୍ରଥମେ କେତୋଟି ନାମର ଶୁଦ୍ଧ ବନାନ ଦେଉଛୁ । ଏଗୁଡ଼ିକ ସାଧାରଣତଃ ଭୁଲ୍ ଭାବରେ ଲେଖାଯାଉଛି । ପ୍ରଥମେ ଅଶୁଦ୍ଧ ଓ ପରେ ଶୁଦ୍ଧ ବନାନଟି ରହିଛି ।

| | | | |
|---|---|---|---|
| ଅଞ୍ଜଳୀ | ଅଞ୍ଜଳି | ଦିଲ୍ଲୀପ | ଦିଲୀପ |
| ଅନୁସୂୟା | ଅନସୂୟା | ଦୁଶାସନ | ଦୁଃଶାସନ |
| ଅମୀୟ | ଅମିୟ | ନୀଳାଦ୍ରୀ | ନୀଳାଦ୍ରି |
| ଆଶୀଷ | ଆଶିଷ | ପିଠବାସ | ପୀଠବାସ |
| ଉଜ୍ୱଳ | ଉଜ୍ଜ୍ୱଳ | ପ୍ରତୀମା | ପ୍ରତିମା |
| ଉର୍ମିଳା | ଊର୍ମିଳା | ଭଗୀରଥୀ | ଭଗୀରଥି |
| କାଳନ୍ଦୀ | କାଳିନ୍ଦୀ | ରବିନ୍ଦ୍ର | ରବୀନ୍ଦ୍ର |
| ଗିରେଶ | ଗିରିଶ | ରଶ୍ମୀ | ରଶ୍ମି |
| ଗୋଲକଚନ୍ଦ୍ର | ଗୋଲୋକଚନ୍ଦ୍ର | ସୌମେନ୍ଦ୍ର | ସୌମ୍ୟେନ୍ଦ୍ର |

ଅକ୍ଷୁର୍ଣ୍ଣ **(ଅକ୍ଷୁଣ୍ଣ)**— ଏହାର ବ୍ୟୁତ୍ପତ୍ତି ହେଉଛି ଅ – କ୍ଷୁଦ୍ + କ୍ତ । ଏଠାରେ 'ର'ର ନାମଗନ୍ଧ ନାହିଁ, ତେଣୁ ରେଫ ଆସିବ କୁଆଡ଼ୁ ? କିନ୍ତୁ ଓଡ଼ିଆରେ ବର୍ଣ୍ଣ ସ୍ୱର୍ଣ୍ଣ, ପୂର୍ଣ୍ଣ ପରି ରେଫଯୁକ୍ତ ବହୁତ ଶବ୍ଦ ଅଛି, ଯାହାକୁ ସହଜରେ ଉଚ୍ଚାରଣ କରିହୁଏ । ତେଣୁ ଅକ୍ଷୁଣ୍ଣର ବ୍ୟୁତ୍ପତ୍ତି ପ୍ରତି ଦୃଷ୍ଟି ନ ଦେଇ ବହୁ ଲୋକ ତାକୁ ସେହିପରି ରେଫ ଦେଇ ଉଚ୍ଚାରଣ କରନ୍ତି ଓ ଲେଖନ୍ତି । କ୍ଷୁଣ୍ଣ, ବିଷଣ୍ଣ ଲେଖିବାରେ ମଧ୍ୟ ଅନୁରୂପ ଭୁଲ୍ ହୁଏ ।

ଅଗ୍ରୀମ (**ଅଗ୍ରିମ**)— (ଅଗ୍ର+ଇମ); କେତେକ ପ୍ରଚଳିତ ସାଧାରଣ ଶବ୍ଦରେ ଗ୍ରୀ ଅଛି, କିନ୍ତୁ ଗ୍ରି ନାହିଁ । ଗ୍ରୀଷ୍ମ, ଗ୍ରୀବା, ଡିଗ୍ରୀ, ସାମଗ୍ରୀ ପ୍ରଭୃତିରେ 'ଗ୍ରୀ' ଥିବା ହେତୁ 'ଅଗ୍ରିମ'କୁ ଅଗ୍ରୀମ ଲେଖି ହୋଇଯାଏ ।

ଅନାଟନ (**ଅନଟନ**)— (ନ+ଅଟନ=ଅନଟନ); ଏହାର ଅର୍ଥ ନିଅଣ୍ଟ ବା ଅଭାବ । ଅନନ୍ତ, ଅନର୍ଗଳ, ଅନଶନ ଏହିପରି ନିଷ୍ପନ୍ନ । ଆମେ ଜାଣୁ ନ+ଅଶନ (ଆହାର)=ଅନଶନ; ନ+ଅନ୍ତ=ଅନନ୍ତ । କିନ୍ତୁ 'ଅଟନ' ଶବ୍ଦ ଓଡ଼ିଆରେ ସ୍ୱତନ୍ତ୍ର ଭାବରେ ବ୍ୟବହୃତ ହୋଇ ନ ଥିବାରୁ ଅନାହାର ପରି ଅନାଟନ ପାଟିରେ ପଶିଯାଏ; ମାତ୍ର ତାହା ଭୁଲ୍ । ଅଟନ ଅର୍ଥ ଚଳନ, ତେଣୁ ଅନଟନ ଅର୍ଥ ଅଚଳ ଅବସ୍ଥା ।

ଅନିର୍ବାର୍ଯ୍ୟ (**ଅନିବାର୍ଯ୍ୟ**)— ଶବ୍ଦଟିର ଗଠନ ଲକ୍ଷ୍ୟକର । ଯାହାକୁ ନିବାରଣ କରିଯାଇପାରେ, ତାହା ନିବାର୍ଯ୍ୟ (ନିର୍ବାର୍ଯ୍ୟ ନୁହେଁ) । ଏହାର ବିପରୀତ ଅନିବାର୍ଯ୍ୟ । ଏଠାରେ ଉଚ୍ଚାରଣ ଯୋଗୁ ଭୁଲ୍ ହୁଏ । ଅନିର୍ବାଣ, ଅନିର୍ବଚନୀୟ ପରି କେହି କେହି କହନ୍ତି ଅନିର୍ବାର୍ଯ୍ୟ ଏବଂ ସେଇଆ ମଧ୍ୟ ଲେଖନ୍ତି ।

ଅନୁକୁଳ (**ଅନୁକୂଳ**)— ସହାୟ ଅର୍ଥରେ ଏହା ବ୍ୟବହୃତ ହୁଏ । ନୌକାଟି ସ୍ରୋତର ସହାୟତାରେ ଯାଉଥିଲେ କୁହାଯାଏ ସ୍ରୋତ ଅନୁକୂଳରେ ଯାଉଛି । ବିପରୀତ ଅର୍ଥରେ 'ପ୍ରତିକୂଳ' ।

ଅନୁସୂୟା (**ଅନସୂୟା**)— ଯାହାର ଅସୂୟା (ଈର୍ଷା) ନାହିଁ ସେ ଅନସୂୟା । ଯେପରି ନ+ଅନ୍ତ=ଅନନ୍ତ, ନ+ଅର୍ଗଳ=ଅନର୍ଗଳ, ଏ ସେହିପରି ନ+ଅସୂୟା=ଅନସୂୟା ।

ଅର୍ଣ୍ଣ (**ଅନ୍ନ**)— ଉଚ୍ଚାରଣ ଦୋଷରୁ କେହି କେହି ଭାତକୁ ଅର୍ଣ୍ଣ କହନ୍ତି ଓ ଲେଖନ୍ତି । ମାତ୍ର ଅର୍ଣ୍ଣ ଏକ ଭିନ୍ନ ଶବ୍ଦ । ଏହାର ଅର୍ଥ ଜଳ ।

ଅପଦସ୍ତ (**ଅପଦସ୍ଥ**)— ସୁବିଧାରେ ଉଚ୍ଚାରିତ ହୋଇଥିବାରୁ ଅନେକେ କହନ୍ତି 'ଅପଦସ୍ତ' 'ମୁଖସ୍ତ' ଏବଂ ତାହାହିଁ ଲେଖନ୍ତି । ମାତ୍ର ଶବ୍ଦଟିର ଗଠନ ଏହିପରି— ପଦ – ସ୍ଥା+ଅ=ପଦସ୍ଥ, ଏହାର ବିପରୀତ ଅପଦସ୍ଥ । ସେହିପରି ମୁଖସ୍ଥ ।

ଅପରାହ୍ନ (**ଅପରାହ୍ଣ**)— ହ ତଳେ ଗୋଟିଏ ଫ୍ଲେଟ ଣ ଥାଇ ଅକ୍ଷରଟିଏ ହୋଇଲେ ଏ ଶବ୍ଦଟି ଶୁଦ୍ଧ ଭାବରେ ଛପିହୁଅନ୍ତା, ମାତ୍ର ସେପରି ଅକ୍ଷର ଅଭାବରୁ

ପ୍ରେସ୍‌ରେ ହ୍ର ଅକ୍ଷରଟି ବସାଇଦେଉଛନ୍ତି । କିନ୍ତୁ ତାହା ଭୁଲ୍ । ତେବେ 'ଅପରାହ୍‌ଣ' ଲେଖି ଏହାର ଶୁଦ୍ଧତା ରକ୍ଷା କରାଯାଇପାରିବ ।

ଅପୁତ୍ରିକ (**ଅପୁତ୍ରକ**) – 'ପୁତ୍ରକ' ଶବ୍ଦର ଅର୍ଥ ପୁତ୍ରବାନ୍; ଯେ ପୁତ୍ରକ ନୁହେଁ ସେ ଅପୁତ୍ରକ ।

ଅଭୂତପୂର୍ବ (**ଅଭୂତପୂର୍ବ**)— ଯାହା ପୂର୍ବରୁ ଘଟିଯାଇଛି, ତାହା ଭୂତପୂର୍ବ; ଏହାର ବିପରୀତ ଅଭୂତପୂର୍ବ । 'ଅଦ୍ଭୁତ' ଶବ୍ଦଟି ଅତି ସାଧାରଣ ହୋଇଥିବାରୁ ଅର୍ଥ ପ୍ରତି ଦୃଷ୍ଟି ନ ଦେଇ କେହି କେହି ଲେଖିପକାନ୍ତି 'ଅଦ୍ଭୁତପୂର୍ବ' । ଏପରି ଅନ୍ୟ ଶବ୍ଦଟି 'ଅଶ୍ରୁତପୂର୍ବ'---ଯାହା ପୂର୍ବରୁ ଶୁଣାଯାଇନାହିଁ । ଏ ଶବ୍ଦଟିକୁ ମଧ୍ୟ କେହି କେହି ଭୁଲ୍ କରି ଲେଖନ୍ତି 'ଅଶ୍ରୃତପୂର୍ବ' । ମନେ ରଖିବା ଉଚିତ ଶ୍ରୁ+ତ=ଶ୍ରୁତ । ଶ୍ରୁ ଧାତୁ ଅର୍ଥ ଶୁଣିବା ।

ଅମୀୟ (**ଅମିୟ**) – ଏହାର ଅର୍ଥ ଅମୃତ ।

ଅଲିମ୍ପିକ (**ଅଲିମ୍ପିକ୍**)— ଇଂରାଜୀ ଶବ୍ଦଟି Olympic, ତେଣୁ 'ଅଲି' ନ ହୋଇ 'ଅଲ' କାହିଁକି ହେବ ?

ଅହର୍ନିଶି (**ଅହର୍ନିଶ**)— ଅହଃ+ନିଶା=ଅହର୍ନିଶ; 'ଦିବାନିଶି'କୁ ଅନୁକରଣ କରି କେହି କେହି 'ଅହର୍ନିଶି' କରିଦିଅନ୍ତି ।

ଆକଣ୍ଠପର୍ଯ୍ୟନ୍ତ (**ଆକଣ୍ଠ** କିମ୍ବା **କଣ୍ଠପର୍ଯ୍ୟନ୍ତ**)— ଆମ କହିବାର ଅର୍ଥ ହେଲା : ସେ କଣ୍ଠପର୍ଯ୍ୟନ୍ତ ଭୋଜନ କରିଅଛି । ଆକଣ୍ଠ ଅର୍ଥ କଣ୍ଠପର୍ଯ୍ୟନ୍ତ । ଏହିଠାରୁ ଆରମ୍ଭ ବା ଏହି ପର୍ଯ୍ୟନ୍ତ ଅର୍ଥରେ 'ଆ' ଶବ୍ଦ ପୂର୍ବରୁ ବସେ; ଯଥା—ଆବାଲ୍ୟ (ବାଲ୍ୟରୁ ଆରମ୍ଭ କରି), ଆମରଣ (ମୃତ୍ୟୁ ପର୍ଯ୍ୟନ୍ତ); ଆଜୀବନ (ଜୀବନ ଥିବା ପର୍ଯ୍ୟନ୍ତ) । ତେଣୁ ଗୋଟିଏ ପ୍ରକାର ଲେଖ – ଆକଣ୍ଠ ଭୋଜନ କିମ୍ବା କଣ୍ଠପର୍ଯ୍ୟନ୍ତ ଭୋଜନ ।

ଆଧ୍ୟାତ୍ମ (**ଅଧ୍ୟାତ୍ମ**)— 'ଅଧ୍ୟାତ୍ମ' ଶବ୍ଦର ଅର୍ଥ ଆତ୍ମାବିଷୟକ । ଏଥିରେ ଇକ ପ୍ରତ୍ୟୟ ହେଲେ 'ଆଧ୍ୟାତ୍ମିକ' ହୁଏ ।

ଆନୁସଙ୍ଗିକ (**ଆନୁଷଙ୍ଗିକ**)— 'ଅନୁଷଙ୍ଗ' ଶବ୍ଦର ଅର୍ଥ ସମ୍ପର୍କ ବା ପ୍ରସଙ୍ଗ; ସେଥିରେ ଇକ ପ୍ରତ୍ୟୟ ଯୋଗ କରାଗଲେ 'ଆନୁଷଙ୍ଗିକ' ହେବ । ଏହାର ଅର୍ଥ

'ସେବ୍ସ ସମ୍ପର୍କୀୟ' । ଶବ୍ଦଟି କପରି ଗଠିତ ହୋଇଛି ନ ଜାଣିଥିବାରୁ ଏ ବନାନ ଭୁଲ୍ ହୁଏ । ସଙ୍ଗ ଏକ ସାଧାରଣ ଶବ୍ଦ; ତେଣୁ 'ଷଙ୍ଗିକ' ସ୍ଥାନରେ 'ସଙ୍ଗିକ' ହୋଇଯିବା ସ୍ୱାଭାବିକ ।

ଆବାଲ୍ୟରୁ (**ବାଲ୍ୟରୁ**)— ଆକଣ୍ଠପର୍ଯ୍ୟନ୍ତ ଦେଖ । ଦୁଇଟି ଏକ ଜାତୀୟ ଭୁଲ୍ ।

ଆବଶ୍ୟକୀୟ (**ଆବଶ୍ୟକ**)— ଆମେ ଇଂରାଜୀରେ ଯାହାକୁ କହୁ **necessary articles**, ତାହାର ଓଡ଼ିଆ ଅନୁବାଦ ହେବ 'ଆବଶ୍ୟକ ଜିନିଷପତ୍ର'; କିନ୍ତୁ ଶତକଡ଼ା ପ୍ରାୟ ୯୫ ଜଣ କହୁଛନ୍ତି ଏବଂ ଲେଖୁଛନ୍ତି 'ଆବଶ୍ୟକୀୟ ଜିନିଷପତ୍ର' । ଏହା ଯେ ଅଶୁଦ୍ଧ ପ୍ରୟୋଗ ଏଥିରେ ସନ୍ଦେହ ନାହିଁ, କାରଣ 'ଆବଶ୍ୟକ' ଶବ୍ଦଟି ବିଶେଷଣ । ଏହାକୁ ଯେ କୌଣସି ବିଶେଷ୍ୟ ପଦ ପୂର୍ବରୁ ବସାଗଲେ କିଛି ଦୋଷ ନାହିଁ ।

ଆମଦାନୀ ଓ ରପ୍ତାନୀ ( **ଆମଦାନି ଓ ରପ୍ତାନି** )— ତରୁଣ ଶବ୍ଦକୋଷ ରଚୟିତାଙ୍କ ମତରେ : ପୂର୍ବର ତାଳପତ୍ର ଲେଖା ଓ ନବସିନ୍ଧାମାନଙ୍କ ଦଲିଲ ଲେଖାରେ 'ଈକାର'ର ବହୁଳ ବ୍ୟବହାର ହେତୁ ଆମର ଶିକ୍ଷିତ ଜନସାଧାରଣ ଅନେକ ଦେଶଜ, ଅପଭ୍ରଷ୍ଟ ଓ ଯାବନିକ ଶବ୍ଦରେ ଅଯଥା ଦୀର୍ଘଈ (ୀ) ଲଗାଇ ଦେଉଛନ୍ତି । ଏହି କାରଣରୁ ଗୁହାରି, ବେମାରି, ମଜୁରି, ଶଙ୍ଖାରି, ରପ୍ତାନି ଓ ଆମଦାନି ପ୍ରଭୃତି ଶବ୍ଦଗୁଡ଼ିକରେ 'ୀ' ନ ଦେଇ ହ୍ରସ୍ୱ ଇକାର ଦେଇ ଲେଖିବା ଯୁକ୍ତିଯୁକ୍ତ ହେବ ।

ଆରକ୍ତ (**ଆରକ୍ତ**)— ଏହାର ପ୍ରକୃତି ପ୍ରତ୍ୟୟ ଆ – ରମ୍ + କ୍ତ; ତେଣୁ ଆଳତି ଅର୍ଥରେ ଏହାର ବନାନ 'ଆରତି' ହିଁ ହେବ ।

ଆଶୀଷ (**ଆଶିଷ**)— ଆଶୀର୍ବାଦ ଅର୍ଥରେ ଏହି ଶବ୍ଦଟିକୁ ବ୍ୟବହାର କରାଯାଉଥିବାରୁ ତା'ର ଅନୁକରଣରେ 'ଆଶୀଷ' ଲେଖି ହୋଇଯାଏ । କିନ୍ତୁ ଶୁଦ୍ଧ ବନାନଟି 'ଆଶିଷ' ।

ଉଚିତ୍ (**ଉଚିତ**)— ଏ ଶବ୍ଦଟିରେ ହଲନ୍ତ ଦେଲେ ଭୁଲ୍ ହେବ । ପ୍ରକୃତ ଶବ୍ଦଟି 'ଉଚିତ' । ଏହା ବିଶେଷଣ । ଏଥିରେ ଯ ପ୍ରତ୍ୟୟ ଯୋଗ କରାଯାଇ (ଉଚିତ+ଯ) ଔଚିତ୍ୟ କରାଯାଏ । କିନ୍ତୁ ଯେଉଁମାନେ ତ ରେ ହଲନ୍ତ ଦିଅନ୍ତି, ସେମାନେ ଉଚ୍ଚାରଣକୁ ଅନୁସରଣ କରୁଛନ୍ତି ବୋଲି ଯୁକ୍ତି କରନ୍ତି । ଜାଣିବା ଦରକାର ଯେ ଆମେ ଅନେକ ହଲନ୍ତ ନ ଥିବା ଶବ୍ଦରେ ହଲନ୍ତ ଲଗାଇ କହୁ, ଯେପରି

'ମୋଠ୍ ଉପରେ', 'ଆଜ ବନ୍ଦ୍ ପାଳନ', 'ଏଠି ବହୁତ୍ ପାଣି' 'ଏତେ ସାହସ୍' ଇତ୍ୟାଦି । ଏହି ନିୟମରେ ହଲନ୍ତ ଦେଲେ ଆମ ଲେଖା ହଲନ୍ତରେ ପୂର୍ଣ୍ଣ ହୋଇଯିବ ।

ଉଜ୍ଜ୍ୱଳମୟ (**ଉଜ୍ଜ୍ୱଳ**)–ସାଧାରଣତଃ ବିଶେଷ୍ୟ ପଦ ପରେ 'ମୟ' ଯୋଗ କରାଯାଏ, ଯଥା—ଜଳମୟ, ଦୁଃଖମୟ, ଶାନ୍ତିମୟ ପ୍ରଭୃତି । ଉଜ୍ଜ୍ୱଳପରି ବିଶେଷଣ ପଦରେ ମୟ ଯୋଗ କଲେ ଭୁଲ୍ ହେବ । 'ତାଙ୍କର ଭବିଷ୍ୟତ ଉଜ୍ଜ୍ୱଳ'—କେବଳ ଏତିକି କହିଲେ ଠିକ୍ ହେବ ।

ଉତ୍କର୍ଷତା (**ଉତ୍କର୍ଷ**)— 'ଉତ୍କର୍ଷ' ଶବ୍ଦଟି ବିଶେଷ୍ୟ; ଏଥିରୁ ବିଶେଷଣ ହୁଏ ଉତ୍କୃଷ୍ଟ । ଏହା ଗୁଣ ବୁଝାଉଥିବାରୁ ଆଉ ତା ଲାଗିବା ଆବଶ୍ୟକ ନାହିଁ । କେବଳ ଲେଖ 'ଏହାର ଉତ୍କର୍ଷ ଅତୁଳନୀୟ' । 'ସଂଯମତା' ଯେପରି ଭୁଲ୍, ଏ ସେହିପରି ଭୁଲ୍ ।

ଉର୍ଦ୍ଧ (**ଊର୍ଦ୍ଧ୍ୱ**)– ଏ ଶବ୍ଦଟି ଲେଖିବାବେଳେ ' ୍ୱ ' (ବ ଫଳା) ଦେବାକୁ ଭୁଲନା ।

ଏକତ୍ରିତ (**ଏକତ୍ର**)— ଏକ ସ୍ଥାନରେ ଏକତ୍ର, ସର୍ବ ସ୍ଥାନରେ ସର୍ବତ୍ର । 'ସ୍ଥାନରେ' ଅର୍ଥରେ ତ୍ର ଲଗାଯାଏ । ସେଥିରେ ପୁଣି ଇତ ପ୍ରତ୍ୟୟ ଯୋଗ କରିବା ଭୁଲ୍ । 'ପଡ଼ିଆରେ ସମସ୍ତେ ଏକତ୍ର ହୁଅ'—ଏତିକି କହିଲେ ଅର୍ଥ ବୁଝି ହେବ ଏବଂ ତାହା ଶୁଦ୍ଧ ହେବ ।

ଏତଦ୍ୱାରା (**ଏତଦ୍ଦ୍ୱାରା**)— ଏତତ୍+ଦ୍ୱାରା=ଏତଦ୍ଦ୍ୱାରା ଏବଂ ତତ୍+ଦ୍ୱାରା= ତଦ୍ଦ୍ୱାରା । ସନ୍ଧି ନିୟମରେ ତ୍ ଏବଂ ଦ ମିଶି ଦ୍ଦ ହେଉଛି । ଶବ୍ଦ ଦୁଇଟିର ଗଠନ ଜାଣି ନ ଥିବାରୁ ଅନେକେ ଭୁଲ୍ କରୁଛନ୍ତି । ଯଦି ଏତଦ୍ଦ୍ୱାରା ଓ ତଦ୍ଦ୍ୱାରା ଲେଖୁଛ, ବନାନ୍ ଠିକ୍ କରି ଲେଖ, ନଚେତ୍ ଏହାଦ୍ୱାରା ଓ ତାହାଦ୍ୱାରା ଲେଖ ।

ଐତିହ (**ଐତିହ୍ୟ**)— ଇତିହ+ଯ=ଐତିହ୍ୟ; ଏହାର ଅର୍ଥ କିଂବଦନ୍ତୀ । 'ଇତିହ' ଶବ୍ଦର ଅର୍ଥ ପୁରାତନ କଥା ।

ଓତଃପ୍ରୋତ (**ଓତପ୍ରୋତ**)— ଲୁଗାରେ ଲମ୍ବ୍‌ବାଗରେ ଥିବା ତାନି ସୂତାକୁ ଓତ ଏବଂ ଓସାରବାଗରେ ଥିବା ଭରଣି ସୂତାକୁ ପ୍ରୋତ କୁହାଯାଏ । ଏହି ଦୁଇ ପ୍ରକାର ସୂତା ଲୁଗାରେ ଯେପରି ଅଙ୍ଗାଙ୍ଗିଭାବରେ ଜଡ଼ିତ ହୋଇ ରହିଥାନ୍ତି, ସେହିପରି ଘନିଷ୍ଠ ସଂପର୍କକୁ 'ଓତପ୍ରୋତ ଭାବ' କୁହାଯାଏ । ଏହି ଶବ୍ଦ ମଝିରେ ବିସର୍ଗ ଦେଲେ ଭୁଲ୍ ହେବ ।

କାଳନ୍ଦୀ (**କାଳିନ୍ଦୀ**) – ଏହାର ପ୍ରକୃତ ପ୍ରତ୍ୟୟ ଏହିପରି : (କଳିନ୍ଦ+ଅ+ଈ) । 'କଳିନ୍ଦ' ଅର୍ଥ ସୂର୍ଯ୍ୟ; ଏଣୁ 'କାଳିନ୍ଦୀ' ସୂର୍ଯ୍ୟକନ୍ୟା ଯମୁନା ନଦୀକୁ ବୁଝାଏ । ଅନ୍ୟ ଏକ ଅର୍ଥରେ--କଳିନ୍ଦ ପର୍ବତରୁ ଜାତ ଯମୁନା ନଦୀ । ଉଚ୍ଚାରଣ ଦୋଷରୁ ଏହାକୁ ଅନେକେ 'କାଳନ୍ଦୀ' କହନ୍ତି ଓ ଲେଖନ୍ତି ।

କୀଟଦଂଷ୍ଟ୍ର (**କୀଟଦଷ୍ଟ**)– ଏ ଶବ୍ଦର ଅର୍ଥ ପୋକଖିଆ । 'ଦଂଶନ'ର ବିଶେଷଣ ଦଷ୍ଟ (ଦଂଷ୍ଟ୍ର ନୁହେଁ) । ଦଂଷ୍ଟ୍ର ଏକ ଭିନ୍ନ ଶବ୍ଦ, ଯାହାର ଅର୍ଥ ଦାନ୍ତ ।

କ୍ଷୟୀଷ୍ଣୁ (**କ୍ଷୟିଷ୍ଣୁ**) – କ୍ଷୟ+ଇଷ୍ଣୁ=କ୍ଷୟିଷ୍ଣୁ; ଇଷ୍ଣୁ ପ୍ରତ୍ୟୟ ହେତୁ ହି ହେବ ।

କ୍ଷୁର୍ଣ୍ଣ (**କ୍ଷୁଣ୍ଣ**) – ଅକ୍ଷୁଣ୍ଣ ଦେଖ ।

ଖେଳାଳୀ (**ଖେଳାଳି**) – ଖେଳ ଶବ୍ଦରେ ଓଡ଼ିଆ ପ୍ରତ୍ୟୟ 'ଆଳି' ମିଶି ଏହି ଶବ୍ଦଟି ନିଷ୍ପନ୍ନ । ଏହିପରି ଅନ୍ୟାନ୍ୟ ଶବ୍ଦ ବୁଢ଼ାଳି, ଚଢ଼ାଳି, କଟାଳି, ପହିଁରାଳି ପ୍ରଭୃତି । ଏହା 'ଳୀ' ହେବାର କୌଣସି ଯୁକ୍ତି ନାହିଁ । କେତେକ ସମ୍ବାଦପତ୍ରରେ ବାରମ୍ବାର ଭୁଲ୍ ବନାନ 'ଖେଳାଳୀ' ବାହାରୁଥିବାରୁ ଏହି ଅଶୁଦ୍ଧି ବହୁଆଡ଼େ ବ୍ୟାପିଯାଇଛି । 'ତରୁଣ ଶବ୍ଦକୋଷ' ମତରେ, ଏହି ଜାତୀୟ ଶବ୍ଦଗୁଡ଼ିକ କେବଳ ସ୍ତ୍ରୀଲିଙ୍ଗ ହେଲେ 'ଳୀ' ହୁଏ ।

ଗଡ୍ଡାଳିକା (**ଗଡ୍ଡଳିକା**) – ଗଡ୍ଡର ବା ଗଡ୍ଡଳ ଶବ୍ଦର ଅର୍ଥ ମେଣ୍ଢା । ଏହା ଜଣାଶୁଣା କଥା ଯେ ଦଳ ଆଗରେ ଥିବା ମେଣ୍ଢା ବା ମେଣ୍ଢୀ ଯେଉଁ ବାଟ ଧରେ, ଅନ୍ୟ ସବୁ ମେଣ୍ଢା ଆଖି ବୁଜି ସେଇ ବାଟ ଧରନ୍ତି । ଏଇ ତଥ୍ୟରୁ 'ଗଡ୍ଡଳ(ରି)କା ପ୍ରବାହ' ଉକ୍ତିଟି ଆସିଛି । ଏହାର ଅର୍ଥ ଅନ୍ଧ ଭାବରେ ଅନ୍ୟର ମତ ସମର୍ଥନ ।

ଗଦ୍‌ଗଦ୍‌ (**ଗଦ୍‌ଗଦ**) – ଏହାର ପ୍ରକୃତି ପ୍ରତ୍ୟୟ ଗଦ୍+ଗଦ୍+ଅ; ତେଣୁ ଶେଷ ଦ ରେ ହଲନ୍ତ ଦେଲେ ଭୁଲ୍ ହେବ ।

ଗୋଲକ (**ଗୋଲୋକ**) – ବିଷ୍ଣୁଙ୍କର ନିତ୍ୟ ଧାମ 'ଗୋଲୋକ' : ଏଣୁ ତାଙ୍କୁ 'ଗୋଲୋକବିହାରୀ' ବା 'ଗୋଲୋକପତି' କୁହାଯାଏ । ଏହି ଅର୍ଥକୁ ଗ୍ରହଣ କରି ଆମେ ପୁଅ ପିଲଙ୍କ ନାମ ଗୋଲୋକବିହାରୀ ରଖିଥାଉଁ; କିନ୍ତୁ ଅନେକେ ସେହି ନାମକୁ ବିକୃତ ଅର୍ଥ କରି ତାକୁ 'ଗୋଲକ' ବୋଲି ଡାକନ୍ତି । 'ଗୋଲକ' (ଗୋଲ+କ) ଏକ ଭିନ୍ନ ଶବ୍ଦ ଯାହାର ଅର୍ଥ ବର୍ତ୍ତୁଳାକାର ।

ଚଳଚିତ୍ର (**ଚଳଚ୍ଚିତ୍ର**) – ଶବ୍ଦର ଗଠନ ଏହିପରି : ଚଳତ୍‌+ଚିତ୍ର=ଚଳଚ୍ଚିତ୍ର। ସିନେମା ଚିତ୍ର ସବୁବେଳେ ଚଳୁଥାଏ ବୋଲି ଏପରି ନାମ। ସନ୍ଧିନିୟମ ଅନୁସାରେ ତ୍‌+ଚ=ଚ୍ଚ ହୋଇଯାଏ।

ଚପଳ୍ୟତା (**ଚାପଲ୍ୟ** କିମ୍ବା **ଚପଳତା**) – ଭାବାର୍ଥରେ ତା, ତ୍ୱ, ଯ ପ୍ରତ୍ୟୟ ବିଶେଷଣରେ ଯୋଗକରି ତାକୁ ବିଶେଷ୍ୟ କରାଯାଏ । ତେଣୁ ଚପଳର ଭାବ ‘ଚପଳତା’ କିମ୍ବା ‘ଚାପଲ୍ୟ’ – ଏ ଦୁଇଟିରୁ ଗୋଟିଏ ହେବ । ଚପଳ୍ୟତାରେ ଯ ଓ ତା ଦୁଇଟି ପ୍ରତ୍ୟୟ ଏକସଙ୍ଗେ ଦିଆଯାଇଛି। ଏହା ଅଶୁଦ୍ଧ।

ଜଳାନ୍ତକ (**ଜଳାତଙ୍କ**) – ଜଳ+ଆତଙ୍କ=ଜଳାତଙ୍କ। ପାଗଳା କୁକୁର ବା ବିଲୁଆ କାମୁଡ଼ିଲେ ଏହି ରୋଗ ହୁଏ। ଏ ରୋଗୀ **ପାଣିକୁ** ଡରେ ବୋଲି ଏ ରୋଗର ଏପରି ନାମ। ଏହାକୁ ‘ମରଣାନ୍ତକ କଷ୍ଟ’ର ଅନୁକରଣରେ କେହି କେହି ‘ଜଳାନ୍ତକ’ ବୋଲି କହନ୍ତି ଓ ଲେଖନ୍ତି।

ଜାଜ୍ୱଲ୍ୟମାନ (**ଜାଜ୍ୱଲ୍ୟମାନ**) – ଏହା ଜ୍ୱଲ୍ ଧାତୁରୁ ଯଙନ୍ତରେ ନିଷ୍ପନ୍ନ। ଏଣୁ ଜ୍ୱ ହେଲେ ଭୁଲ୍ ହେବ।

ତଦ୍ରୁପ (**ତଦ୍ରୂପ**)— ଏହା ତତ୍‌+ରୂପ ମିଶି ଗଠିତ । ‘ସେହିପରି’ ଅର୍ଥରେ ବ୍ୟବହୃତ ହୁଏ।

ତଦ୍ୱାରା (**ତଦ୍ୱାରା**) – ‘ଏତଦ୍ୱାରା’ ଦେଖ।

ତାଚ୍ଛଲ୍ୟ (**ତାଚ୍ଛଲ୍ୟ**) – ଶବ୍ଦଟି ‘ଅବଜ୍ଞା’ ଅର୍ଥରେ ବ୍ୟବହୃତ ହୁଏ । ଅପଭ୍ରଂଶରେ ‘ତାଚ୍ଛିଲ୍ୟ’ ମଧ୍ୟ କେହି କେହି କହନ୍ତି। କିନ୍ତୁ ‘ବାତ୍ସଲ୍ୟ’ ଶବ୍ଦର ଅନୁକରଣରେ ଏହାକୁ ‘ତାତ୍ସଲ୍ୟ’ ଲେଖିଲେ ଭୁଲ୍ ହେବ।

ତିର୍ଯ୍ୟକ୍ (**ତିର୍ଯ୍ୟକ୍**)— ତିରସ୍‌+ଅନଚ୍‌+କ୍ୱିପ୍‌=ତିର୍ଯ୍ୟକ୍; ଏହାର ଅର୍ଥ ତେରେଛା।

ତ୍ରୁଟୀ (**ତ୍ରୁଟି** ବା **ତ୍ରୁଟୀ**) – ଏହା ଏକ ସାଧାରଣ ଅଶୁଦ୍ଧି। ତ୍ରୁଟ୍‌ ଧାତୁରୁ ଏହା ନିଷ୍ପନ୍ନ, ତେଣୁ ତ୍ରୁ ହେବାର କୌଣସି କାରଣ ନାହିଁ ।

ଦମ୍ପତ୍ତି (**ଦମ୍ପତି**) – ବିକଳ୍ପରେ ଦମ୍ପତୀ, ଜମ୍ପତି ଓ ଜମ୍ପତୀ ମଧ୍ୟ ହୁଏ। ଜାୟା ଓ ପତି ମିଶି ଶବ୍ଦଟି ଗଠିତ। ‘ସମ୍ପତ୍ତି’ ଶବ୍ଦ ସଙ୍ଗେ ବେଶୀ ପରିଚୟ ଥିବାରୁ କେହି କେହି ଏହାକୁ ସେହିପରି ‘ଦମ୍ପତ୍ତି’ ଲେଖନ୍ତି। ମାତ୍ର ତାହା ଭୁଲ୍।

ଦାଖ (**ଦାବ**) – ଏହା ଏକ ସାଧାରଣ ଭୁଲ୍ । ଅଭିଧାନରେ 'ଦାଖ' ନାହିଁ ।

ଦାରିଦ୍ର୍ୟତା (**ଦାରିଦ୍ର୍ୟ କିମ୍ବା ଦରିଦ୍ରତା**)— ଗୃହଲଂଘ୍ୟତା ଦେଖ ।

ଦିଗାମ୍ବର (**ଦିଗମ୍ବର**)— 'ପୀତାମ୍ବର', 'ବାଘାମ୍ବର' ଶବ୍ଦ ଲୋକମୁଖରେ ଅଧିକ ପ୍ରଚଳିତ ଥିବାରୁ ଏ ଭୁଲ୍ ଘଟେ । ଦିକ୍+ଅମ୍ବର=ସନ୍ଧିନିୟମ ଅନୁସାରେ ଦିଗମ୍ବର ହେବ । ଦିଗ ଯାହାର ବସ୍ତ୍ର ଅର୍ଥାତ୍ ଲଙ୍ଗଳା । 'ଶିବ' ଏବଂ ଏକ 'ଜୈନ ସମ୍ପ୍ରଦାୟ' ଏହି ନାମରେ ପରିଚିତ ।

ଦିଲ୍ଲୀପ (**ଦିଲୀପ**)— ପୌରାଣିକ ରାଜାମାନଙ୍କ ନାମାନୁସାରେ ଆମେ ଅନେକ ପିଲାଙ୍କ ନାମକରଣ କରୁ, ଯଥା— ଦଶରଥ, ଯଯାତି, ରାମ, ଦୁର୍ଯ୍ୟୋଧନ ପ୍ରଭୃତି । ଦିଲୀପ ସେହିପରି ଏକ ପୌରାଣିକ ରାଜାଙ୍କ ନାମ । ତାହା 'ଦିଲ୍ଲୀପ' ନୁହେଁ; କିନ୍ତୁ ଦିଲ୍ଲୀ ସହରର ବନାନ ସଙ୍ଗେ ଆମେ ବେଶି ପରିଚିତ ଥିବାରୁ ନାମଟିକୁ ଅଶୁଦ୍ଧ କରି 'ଦିଲ୍ଲୀପ' ଲେଖୁଁ ।

ଦୁବ (**ଦୂବ**) – ସଂସ୍କୃତ 'ଦୂର୍ବା'ରୁ ଏହା ଆସିଛି । ତେଣୁ ଦୁବ ବନାନ ଭୁଲ୍ ।

ଦୁରାବସ୍ଥା (**ଦୁରବସ୍ଥା**)— ଏହାର ଗଠନ ( ଦୁଃ+ଅବସ୍ଥା ) ଜାଣିଲେ ଭୁଲ୍ ହେବନାହିଁ । ଏଥିରେ 'ରା' ଆସିବ କେଉଁଠୁ ? ଦୁଃ ପରେ ଆ ଥିଲେ ସିନା ରା ହୁଅନ୍ତା; ଯେପରି ଦୁଃ+ଆଗ୍ରହ=ଦୁରାଗ୍ରହ ହୁଏ, ଦୁଃ+ଅଭିସନ୍ଧି= ଦୁରଭିସନ୍ଧି ଏବଂ ଦୁଃ+ଆରୋଗ୍ୟ=ଦୁରାରୋଗ୍ୟ; ଏ ଦୁଇଟି ଶବ୍ଦର ବନାନ ତୁଳନା କରି ଦେଖ ।

ଦୂର୍ଗା (**ଦୁର୍ଗା**) – ଦୁର୍ଗ ଓ ଦୁର୍ଗା ଦୁଇଟିର ମୂଳ ଅକ୍ଷର 'ଦୁ' ।

ଦ୍ୱନ୍ଦ (**ଦ୍ୱନ୍ଦ୍ୱ**)— ଏ ଶବ୍ଦଟିକୁ ଅନେକ ଲୋକ ଭୁଲ୍ କରି ଲେଖୁଛନ୍ତି । ନ୍ଦ୍ୱ ର ଉଚ୍ଚାରଣ କଷ୍ଟକର ହେଉଥିବାରୁ ଅଧିକାଂଶ ଲୋକ କେବଳ 'ଦ୍ୱନ୍ଦ' କହନ୍ତି ଓ ତାହାହିଁ ଲେଖନ୍ତି । ଏଥିରେ ଗଠିତ ଯୁଗ୍ମ ଶବ୍ଦଗୁଡ଼ିକ ଲେଖିବାବେଳେ ମଧ୍ୟ ସତର୍କତା ଆବଶ୍ୟକ । ଲେଖ ଦ୍ୱନ୍ଦ୍ୱଯୁଦ୍ଧ, ପ୍ରତିଦ୍ୱନ୍ଦ୍ୱୀ, ପ୍ରତିଦ୍ୱନ୍ଦ୍ୱିତା ।

ଧନୀକ (**ଧନିକ**)— 'ଧନ' ଶବ୍ଦରେ 'ଇନ୍' ପ୍ରତ୍ୟୟ ଦେଲେ ହୁଏ 'ଧନିନ୍' । ଏଥିରୁ 'ଧନୀ' ଶବ୍ଦଟି ମିଳେ । ଧନିନ୍+କ=ଧନିକ (ଧନୀକ ନୁହେଁ) ।

ଧୂମ୍ର (**ଧୂମ**) – କିଛିଦିନ ତଳେ 'ଧୂମ୍ରପାନ ନିଷେଧ'—ଏହି ଅଶୁଦ୍ଧ ଉକ୍ତିଟି ବସ୍, ଷ୍ଟେସନ୍, ସରକାରୀ କାର୍ଯ୍ୟାଳୟ ପ୍ରଭୃତି ସବୁଠାରେ ଦେଖିବାକୁ ମିଳୁଥିଲା ।

ଶୁଦ୍ଧ କଥାଟି 'ଧୂମପାନ', ଧୂମ୍ରପାନ ନୁହେଁ; କାରଣ ଧୂଆଁର ସାଧୁ ଶବ୍ଦ 'ଧୂମ'। ଧୂମ୍ର ଏକ ଭିନ୍ନ ଶବ୍ଦ, ଯାହାର ଅର୍ଥ କୃଷ୍ଣଲୋହିତ ବର୍ଣ୍ଣ।

ଧୃବ (**ଧ୍ରୁବ**)— ଏ ଦୁଇଟିର ସମାନ ଉଚ୍ଚାରଣ ଥିବାଯୋଗୁ ଏ ଭୁଲ୍ ହୁଏ। ଅନେକ ପିଲା ସେଥିପାଇଁ ଦ୍ରୁତ କୁ ଦୃତ, ଶ୍ରୁତି କୁ ଶୃତି ଏବଂ ତ୍ରୁଟି କୁ ତୃଟି ଲେଖିଦିଅନ୍ତି।

ନର୍କ (**ନରକ**)— ଅଭିଧାନରେ 'ନର୍କ' କୁ ଅଶୁଦ୍ଧ କୁହାଯାଇଛି; କିନ୍ତୁ ଲୋକ-ମୁଖରେ 'ନର୍କ' ବେଶି ଶୁଣାଯାଏ। ମନେରଖ 'ନରକ' ଶବ୍ଦଟି ଠିକ୍।

ନିଃସ୍ୱାର୍ଥପର (**ନିଃସ୍ୱାର୍ଥ**)— ଅନେକେ ଭାବନ୍ତି 'ସ୍ୱାର୍ଥପର'ର ବିପରୀତ ହେଉଛି 'ନିଃସ୍ୱାର୍ଥପର'; ମାତ୍ର ତାହା ଠିକ୍ ନୁହେଁ। ଠିକ୍ ଶବ୍ଦଟି 'ନିଃସ୍ୱାର୍ଥ'। ଏହା ବିଶେଷଣ ହୋଇଥିବାରୁ ଏଥିରେ 'ପର' ବସିବା ଆବଶ୍ୟକ ନାହିଁ।

ନିର୍ଦ୍ଧନୀ (**ନିର୍ଦ୍ଧନ**)— ଧନୀର ବିପରୀତ ନିର୍ଦ୍ଧନୀ, ଦୋଷୀର ନିର୍ଦ୍ଦୋଷୀ— ଏହା ଧୁଏଁ ଧୁଏଁ ପାଟିକୁ ଆସିଯାଉଛି। କିନ୍ତୁ ବ୍ୟାକରଣରେ ଯେଉଁ ନିୟମ ଅଛି ତାହା ମନେରଖ। ଧନ ଯାହାର ଅଛି ସେ ଧନୀ; ଧନ ଯାହାର ନାହିଁ ସେ ନିର୍ଦ୍ଧନ।

ନିରପରାଧୀ (**ନିରପରାଧ**)— 'ନିର୍ଦ୍ଧନୀ' ଦେଖ। ସ୍ତ୍ରୀ ଲିଙ୍ଗରେ 'ନିରପରାଧା'।

ନୀଳାଦ୍ରୀ (**ନୀଳାଦ୍ରି**)— ଅଦ୍ରି ଅର୍ଥ ପର୍ବତ; ତେଣୁ ନୀଳ+ଅଦ୍ରି=ନୀଳାଦ୍ରି ହେବ।

ପରିତ୍ୟଜ୍ୟ (**ପରିତ୍ୟାଜ୍ୟ**)— ପରିତ୍ୟଜ୍+ଅ=ପରିତ୍ୟାଗ; ପରି—ତ୍ୟଜ୍+ଯ=ପରିତ୍ୟାଜ୍ୟ; ଅର୍ଥ—ପରିତ୍ୟାଗଯୋଗ୍ୟ, ଯାହାକୁ ଛାଡ଼ିବା ଉଚିତ।

ପର୍ଯ୍ୟବେସିତ (**ପର୍ଯ୍ୟବସିତ**)— ଏହାର ପ୍ରକୃତିପ୍ରତ୍ୟୟ ପରି—ଅବ—ସୋ+ତ; 'ଏ ଅଭିଯୋଗ କୌଣସି ତଥ୍ୟ ଉପରେ ପର୍ଯ୍ୟବସିତ ନୁହେଁ।' ଏଠାରେ କେହି କେହି ଭୁଲ୍‌ରେ ଲେଖନ୍ତି 'ପର୍ଯ୍ୟବେସିତ ନୁହେଁ।'

ପାରଂପାରିକ (**ପାରଂପରିକ**)— ପରଂପରା+ଇକ=ପାରଂପରିକ। ଶବ୍ଦର ମଝି ଅକ୍ଷରଟି ପ ଥିଲା, ତେଣୁ ତାହା ପ ରହିବ; ପା ହେବାର କୌଣସି କାରଣ ନାହିଁ। ଇକ ପ୍ରତ୍ୟୟ ଲାଗିବା ଯୋଗୁ ନିୟମ ଅନୁସାରେ ପ୍ରଥମ ପ ଟି ପା ହେବ, ଯେପରି ଶରୀର ହୁଏ ଶାରୀରିକ।

ପାଶୋର (**ପାସୋର**)— ପୂର୍ବେ ଏହା ଠିକ୍ ଭାବରେ ଲେଖାଯାଉଥିଲା ଏବଂ ଛପାଯାଉଥିଲା । ପୁରୁଣା ରାଧାନାଥ ଗ୍ରନ୍ଥାବଳୀରେ ଅଛି 'ଏ ଶୋକପାସୋର ଅପ୍‌ସର ଭୁବନ' । ଅଳ୍ପଦିନ ହେଲା 'କିଶୋର'କୁ ଅନୁକରଣ କରି ସମସ୍ତେ ଲେଖିଲେ 'ପାଶୋର' । କିନ୍ତୁ ଠିକ୍ ବନାନଟି 'ପାସୋର' ।

ପାଷାଣ୍ଡ (**ପାଷଣ୍ଡ**)— ଏହାର ବ୍ୟୁତ୍ପତ୍ତି : ପାପ – ସନ୍ + ଡ; ଉଚ୍ଚାରଣ ଦୋଷରୁ ଲେଖିବାରେ ଭୁଲ୍ ହେଉଛି । ପା ପରେ ଷା କହିବା ଯେତେ ସହଜ, ଷ କୁ ଭୁଣ୍ଡ ଫେରାଇବା ସେତେ ସହଜ ନୁହେଁ । ଏହି କାରଣରୁ କେହି କେହି ଗ୍ରାହକ, ସାହସ ଓ ବାହନକୁ ଗ୍ରାହାକ, ସାହାସ ଓ ବାହାନ ରୂପେ ଭୁଲ୍ କରି କହନ୍ତି ଓ ଲେଖନ୍ତି ।

ପୁର୍ନମିଳନ (**ପୁନର୍ମିଳନ**)— ପୁନଃ + ମିଳନ; ବିସର୍ଗ ସନ୍ଧି ନିୟମ ଅନୁସାରେ ପୁନଃ ଶେଷରେ ଥିବା ଃ ଉଠିଯାଇ ମିଳନର ପ୍ରଥମ ବର୍ଣ୍ଣ ମି ରେ ମିଶି ର୍ମି ହୋଇଯିବ । ଏହା ନ ବୁଝି କେହି କେହି ନ ରେ ରେଫ ଲଗାଇଦିଅନ୍ତି; ପୁର୍ନଲିଖନ ସେହିପରି ଅନ୍ୟ ଏକ ଭୁଲ୍ । ଠିକ୍ ଶବ୍ଦଟି ହେବ 'ପୁନର୍ଲିଖନ' ।

ପୂଜ୍ୟାସ୍ପଦ (**ପୂଜାସ୍ପଦ**) ପୂଜା ଓ ଆସ୍ପଦ ମିଶି ଶବ୍ଦଟି ଗଠିତ । ଆସ୍ପଦ ଶବ୍ଦର ଅର୍ଥ ପାତ୍ର; ତେଣୁ ପୂଜାସ୍ପଦ ଅର୍ଥ ପୂଜାର ପାତ୍ର (ପୂଜ୍ୟର ପାତ୍ର ନୁହେଁ) । ସେହିପରି ସ୍ନେହର ପାତ୍ର=ସ୍ନେହାସ୍ପଦ । ପୂଜା ଓ ସ୍ନେହ ଦୁଇଟି ବିଶେଷ୍ୟ ପଦ, ମାତ୍ର ପୂଜ୍ୟ ବିଶେଷଣ । ତାପରେ ଆସ୍ପଦ ବସିବ କିପରି ?

ପୂଣ୍ୟ (**ପୁଣ୍ୟ**)— ପୁଣ୍ + ଯ=ପୁଣ୍ୟ ।

ପୂର୍ଣ୍ଣଚ୍ଛେଦ (**ପୂର୍ଣ୍ଣଚ୍ଛେଦ**)— ସଂସ୍କୃତ ବ୍ୟାକରଣର ନିୟମାନୁସାରେ 'ପୂର୍ଣ୍ଣଚ୍ଛେଦ' ଶୁଦ୍ଧ ।

ପୌରହିତ୍ୟ (**ପୌରୋହିତ୍ୟ**)— ଏହି ସାଧାରଣ ଅଶୁଦ୍ଧିଟି ସଭା ସମିତି ପାଇଁ ଛପାଯାଉଥିବା ନିମନ୍ତ୍ରଣ ପତ୍ରରେ ବେଶୀ ଦେଖିବାକୁ ମିଳେ । ବୋଧହୁଏ ଅତି ପ୍ରଚଳିତ ଗୌରବର୍ଣ୍ଣ, ସୌରମାସ, ପୌର ପରିଷଦ ଏବଂ କ୍ଷୌର ପ୍ରଭୃତି ଶବ୍ଦ ଅନୁକରଣରେ ଏହା ଲୋକମୁଖରେ ପୌରହିତ୍ୟ ହୋଇଯାଏ । ଯେଉଁମାନେ ଶବ୍ଦର ଗଠନପ୍ରତି ଦୃଷ୍ଟି ଦେଇ ଉଚ୍ଚାରଣ କରନ୍ତି, ସେମାନେ ଭୁଲ୍ କରନ୍ତି ନାହିଁ, କାରଣ ସେମାନେ ଜାଣନ୍ତି ପୁରୋହିତ + ଯ=ପୌରୋହିତ୍ୟ; ତେଣୁ ରୋ ଟା ର

ହୋଇପିବ କାହିଁକି ? ଏହିପରି ଆଉ ଏକ ଶବ୍ଦ ଭୌଗୋଳିକକୁ ଅନେକେ ଭୁଲ୍ କରି ଲେଖନ୍ତି 'ଭୌଗଳିକ' ।

ପ୍ରଜ୍ଜ୍ୱଳିତ (**ପ୍ରଜ୍ୱଳିତ**)— ଉତ୍ – ଜ୍ୱଲ୍—ଅ=ଉଜ୍ଜ୍ୱଳ; ଏଠାରେ ତ୍ ପରେ ଜ୍ୱ ଥିବାରୁ ସନ୍ଧିସୂତ୍ର ଅନୁଯାୟୀ ଜ୍ଜ୍ୱ ହୋଇଯାଇଛି । କିନ୍ତୁ ପ୍ରଜ୍ୱଳିତ ଶବ୍ଦରେ ସେପରି ନାହିଁ । ପ୍ର – ଜ୍ୱଲ୍—ତ = ପ୍ରଜ୍ୱଳିତ । ଏଠାରେ ଜ୍ଜ୍ୱ ହେବ କାହିଁକି ?

ପ୍ରତ୍ୟେହ (**ପ୍ରତ୍ୟହ**)— ଏ ଶବ୍ଦଟିକୁ 'ପ୍ରତ୍ୟେକ' ପରି ଲେଖିବାର କୌଣସି କାରଣ ନାହିଁ । ଦୁଇଟିର ବ୍ୟୁତ୍ପତ୍ତି ଭିନ୍ନ ଭିନ୍ନ । ପ୍ରତି+ଏକ=ପ୍ରତ୍ୟେକ, ମାତ୍ର ପ୍ରତି+ଅହନ୍=ପ୍ରତ୍ୟହ । ଏହିପରି ଆଉ ଏକ ବନାନ ଭୁଲ୍ ହୁଏ 'ପ୍ରତ୍ୟୟ' ଶବ୍ଦରେ । କେହି କେହି ପିଲା ଲେଖନ୍ତି 'ପ୍ରତ୍ୟେୟ' । ଏହା ଭୁଲ୍ ।

ପ୍ରବାହମାନ (**ପ୍ରବହମାନ**)— ଏହାର ଅର୍ଥ 'ଯାହା ବହିଚାଲିଛି' ।

ପ୍ରାୟଶ୍ଚିତ (**ପ୍ରାୟଶ୍ଚିତ୍ତ**)– ଏହାର ପ୍ରକୃତି ପ୍ରତ୍ୟୟ ପ୍ରାୟସ୍ – ଚିତ୍—ତ, ତେଣୁ ତ୍ତ ହେବ ।

ବର୍ହିବାଣିଜ୍ୟ (**ବହିର୍ବାଣିଜ୍ୟ**)— ପୁନର୍ମିଳନ ଦେଖ ।

ବାତ୍ସଲ୍ୟତା (**ବାତ୍ସଲ୍ୟ** କିମ୍ବା **ବତ୍ସଲତା**)— 'ସ୍ୱପଳ୍ୟତା' ଦେଖ ।

ବାହାନ (**ବାହନ**)— ଏ ଭୁଲ୍ କାହିଁକି ହୁଏ 'ପାଷାଣ୍ଡ' ଶବ୍ଦରେ କୁହାଯାଇଛି ।

ବିକାରଣ (**ବିକରଣ**)— ବି – କୃ-ଅନ=ବିକରଣ ।

ବିବିଧ ପ୍ରକାର (**ବିବିଧ**)– 'ବିଧ' ଅର୍ଥ ପ୍ରକାର; ସେଥିପାଇଁ ନାନା ପ୍ରକାରକୁ ନାନାବିଧ, ବହୁ ପ୍ରକାରକୁ ବହୁବିଧ ଶବ୍ଦଦ୍ୱାରା ପ୍ରକାଶ କରାଯାଏ । ସେହିପରି ବିଭିନ୍ନ ପ୍ରକାର ବଦଳରେ କେବଳ 'ବିବିଧ' କହିବା ହିଁ ଉଚିତ । 'ବିବିଧ ପ୍ରକାର'ରେ ପୁନରୁକ୍ତ ଦୋଷ ହେଉଛି ।

ବିବୃତ୍ତି (**ବିବୃତି**)— ଏହାର ଅର୍ଥ ମତାମତ ବା ବିବରଣ । ବି – ବୃ – ତି— ଶବ୍ଦଟି ଏହିପରି ନିଷ୍ପନ୍ନ । ତେଣୁ ତ୍ତି ହେବାର କାରଣ ନାହିଁ । 'ପ୍ରବୃତ୍ତି' ଓ 'ନିବୃତ୍ତି'ର ପ୍ରକୃତି ପ୍ରତ୍ୟୟ ଭିନ୍ନ ଥିବାରୁ ସେଠାରେ ତ୍ତି ହୁଏ; ପ୍ର – ବୃତ୍ – ତି ଓ ନି – ବୃତ୍ – ତି ।

ବିଭତ୍ସ (**ବୀଭତ୍ସ**)— ଏ ଶବ୍ଦଟି ବଧ୍ ଧାତୁରୁ ସନନ୍ତରେ ନିଷ୍ପନ୍ନ ।

ବରୁଦ୍ଧରେ (**ବିରୋଧରେ**)— ଏହି ଅଶୁଦ୍ଧ ଶବ୍ଦଟି ବହୁକାଳରୁ ଭାଷାରେ ପଶି ତାର ଆସ୍ଥାନ ଏପରି ଦୃଢ଼ କରିନେଇଛି ଯେ ତାକୁ ଉଠାଇବା ସହଜ ମନେ ହେଉନାହିଁ । 'ବିରୋଧ' ବିଶେଷ୍ୟ ପଦ ବିଶେଷଣରେ 'ବିରୁଦ୍ଧ' ହୁଏ । ରେ, ରୁ ପ୍ରଭୃତି ବିଭକ୍ତି ଚିହ୍ନ ବିଶେଷ୍ୟରେ ଲଗିବା ନିୟମ, ବିଶେଷଣରେ ଲଗେ ନାହିଁ ।

ବିଶ୍ରାମଗାର (**ବିଶ୍ରାମାଗାର**)— ବିଶ୍ରାମ+ଆଗାର, ସନ୍ଧି ନିୟମରେ ବିଶ୍ରାମାଗାର ହେବ ।

ବିଷର୍ଣ୍ଣ (**ବିଷଣ୍ଣ**)— ଏହା ଏକ ଅତି ସାଧାରଣ ଅଶୁଦ୍ଧି । 'ଅକ୍ଷୂର୍ଣ୍ଣ' ଶବ୍ଦ ଦେଖ । ସେଠାରେ ଯାହା କୁହାଯାଇଛି, ତାହା ଏଠାରେ ମଧ୍ୟ ପ୍ରଯୁଜ୍ୟ ।

ବୃକକ୍ (**ବୃକ୍କ**) – ପୂର୍ବେ 'ଦ୍ୱିତୀୟ କ' ଛାପିବା ପାଇଁ କ ତଳେ ଶ୍ରେଷ୍ଠ କ ଟିଏ ଥାଇ ଯେପରି ଟାଇପ୍‌ଟିଏ ମିଳୁଥିଲା, ଏବେ ତାହା ମିଳୁ ନ ଥିବାରୁ ହଳନ୍ତ ସାହାଯ୍ୟରେ ସେଗୁଡ଼ିକୁ ଛପାଯାଉଛି, ଯଥା—ପକ୍‌କା ଘର ।

ଭାବୋତ୍ତଳନ (**ଭାବୋତ୍ତୋଳନ**)— ଭାବ+ଉତ୍ତୋଳନ=ଭାବୋତ୍ତୋଳନ । ସନ୍ଧି ନିୟମକୁ ଦୃଷ୍ଟି ଦେଲେ ଭୁଲ୍ ହେବାର କୌଣସି କାରଣ ନାହିଁ । କିନ୍ତୁ ଭାଷାକୁ ଢିଲା ଭାବରେ ଦେଖିଲେ ଓ ଲେଖିଲେ ଏହି ଜାତୀୟ ଅନ୍ୟ କେତୋଟି ଭୁଲ୍ ମଧ୍ୟ ହେବ, ଯଥା –'ଉତ୍ତରୋତ୍ତର'କୁ ଉତ୍ତୋରତ୍ତର, 'ସର୍ବତୋଭାବେ' କୁ ସର୍ବୋତଭାବେ ।

ଭୁବନେଶ୍ୱର (**ଭୁବନେଶ୍ୱର**)— ଯେ 'ଭୁବନ' ଶବ୍ଦର ଠିକ୍ ବନାନ ଜାଣେ, ସେ 'ଭୁବନେଶ୍ୱର'କୁ ଭୁଲ୍ କରିବ ନାହିଁ; କାରଣ ଭୁବନର ଈଶ୍ୱର= ଭୁବନେଶ୍ୱର ।

ଭୁଲ (**ଭୁଲ୍**)— ଯେଉଁମାନେ ଠିକ୍ ଭୁଲ୍‌ର ପ୍ରଭେଦ ଜାଣନ୍ତି ନାହିଁ, ସେଇ-ମାନଙ୍କ କଲମରୁ ଏ 'ଭୁଲ୍' ବାହାରେ ।

ଭୌଗଳିକ (**ଭୌଗୋଳିକ**)— ଭୂଗୋଳ+ଇକ=ଭୌଗୋଳିକ । 'ପୌରହିତ୍ୟ' ଦେଖ ।

ଭ୍ରାତ୍ରୁଷ୍ପୁତ୍ର (**ଭ୍ରାତୁଷ୍ପୁତ୍ର**)— ଭାଇର ପୁଅ ବା ପୁତୁରା । ଏ ଶବ୍ଦଟି ଅବିକଳ ସଂସ୍କୃତ ଭାଷାରୁ ଆସିଛି । ସଂସ୍କୃତରେ 'ଭ୍ରାତୁଃ' ଅର୍ଥ ଭାଇର । ତେଣୁ ଭ୍ରାତୁଃ+ପୁତ୍ର= ଭ୍ରାତୁଷ୍ପୁତ୍ର ସନ୍ଧି ନିୟମରେ ହେଲା । 'ତ୍ରୁ' ହେବ କାହିଁକି ?

ମଶାଗ୍ନି (**ମଶାରି**)-- ମଶ+ଅରି=ମଶାରି । ମଶ ଅର୍ଥ ମଶା, ଅରି ଅର୍ଥ ଶତ୍ରୁ; ତେଣୁ ମଶାରି ଅର୍ଥ ମଶାଙ୍କର ଶତ୍ରୁ । 'ମଶକ୍‌ହରୀ' ଶବ୍ଦରୁ ଏହା ଆସିଛି ବୋଲି କାହାର କାହାର ମତ ।

ମହତ୍ତ୍ୱ (**ମହତ୍ତ୍ୱ**)— ମହତ୍ତ୍ୱ ଲୋକର ଭାବ (ମହତ୍+ତ୍ୱ); ତେଣୁ ତ୍ତ୍ୱ ହେଲା ।

ମହାତ୍ମ୍ୟ (**ମାହାତ୍ମ୍ୟ**)— ମହାତ୍ମନ୍+ଯ=ମାହାତ୍ମ୍ୟ; ମହାତ୍ମ୍ୟ ଶବ୍ଦ ନାହିଁ ।

ମାମୁଁ (**ମାମୁ**)— ମାମା, ମାମୀ ଯେପରି ଉଚ୍ଚାରିତ ହେଉଛି ମାମୁ ସେହିପରି ହେବ । କୌଣସିଠାରେ ଚନ୍ଦ୍ରବିନ୍ଦୁ ଦେବାର ପ୍ରଶ୍ନ ଉଠୁନାହିଁ । 'ମୁଁ' ଶବ୍ଦର ଅନୁକରଣରେ କେହି କେହି ମାମୁଁ ଲେଖନ୍ତି । ମାତ୍ର ତାହା ଅଶୁଦ୍ଧ । ଗ୍ରନ୍ଥମନ୍ଦିର-ଦ୍ୱାରା ପ୍ରକାଶିତ କୃଷ୍ଣଚନ୍ଦ୍ର କରଙ୍କ ତରୁଣ ଶବ୍ଦକୋଷରେ 'ମାମୁଁ' ଭୁଲ୍ ବୋଲି ଦର୍ଶାଯାଇଛି ।

ମୁଖସ୍ତ (**ମୁଖସ୍ଥ**)— ଉଚ୍ଚାରଣ ପାଇଁ ସୁବିଧା ହେଉଥିବାରୁ କେହି କେହି ମୁଖସ୍ତ କହନ୍ତି ଓ ଲେଖନ୍ତି, ମାତ୍ର ତାହା ଅଶୁଦ୍ଧ । (ଅପଦସ୍ତ ଦେଖ)

ମୁନିଆଁ (**ମୁନିଆ**)— ମୁନ୍+ଇଆ=ମୁନିଆ, ଯେପରି ଲୁଣରୁ ଲୁଣିଆ ଓ ଶଗଡ଼ରୁ ଶଗଡ଼ିଆ ହୋଇଛି, ଏ ସେହିପରି ହେବ । ଆ କୁ ଆଁ କରିବାର କୌଣସି ଯଥାର୍ଥତା ନାହିଁ । 'ନିଆଁ' ଶବ୍ଦର ଅନୁକରଣରେ କେହି କେହି ମୁନିଆ କୁ ମୁନିଆଁ, ଦୁନିଆ କୁ ଦୁନିଆଁ, ପାନିଆ କୁ ପାନିଆଁ ଓ ସୁନିଆ କୁ ସୁନିଆଁ ଲେଖିଦିଅନ୍ତି; ମାତ୍ର ତାହା ଭୁଲ୍ ।

ମୁହୁର୍ମୁହୁ (**ମୁହୁର୍ମୁହୁଃ**)- ମୁହୁଃ+ମୁହୁଃ=ମୁହୁର୍ମୁହୁଃ । ପ୍ରଥମ ଃ ଟି ସନ୍ଧି-ଯୋଗୁ ରେଫ ହୋଇଗଲା, କିନ୍ତୁ ଦ୍ୱିତୀୟଟି ରହିବ ।

ମୂଖ୍ୟ (**ମୁଖ୍ୟ**)— ମୁଖ-ଯ=ମୁଖ୍ୟ; ଏହାର ଅର୍ଥ ମୁଖିଆ ବା ପ୍ରଧାନ । ଆଜିକାଲି ମୁଖ୍ୟମନ୍ତ୍ରୀ ଲେଖିବାବେଳେ ଏ ଭୁଲ୍ ବେଶି ଦେଖାଯାଏ ।

ମୃତ୍ୟୁଞ୍ଜୟୀ (**ମୃତ୍ୟୁଞ୍ଜୟ**)— ମୃତ୍ୟୁ—ଜି—ଅ=ମୃତ୍ୟୁଞ୍ଜୟ, ମୃତ୍ୟୁଞ୍ଜୟୀ ନୁହେଁ । କାଳଜୟୀ ଓ ମରଣଜୟୀ ଶବ୍ଦର ଅନୁକରଣରେ ବୋଧହୁଏ କେହି କେହି ମୃତ୍ୟୁଞ୍ଜୟୀ ଲେଖିଦିଅନ୍ତି ।

ଯାତାୟତ (**ଯାତାୟାତ**)— ଯାତ+ଆୟାତ=ଯାତାୟାତ । ଏହାର ଅର୍ଥ ଗମନାଗମନ ବା ଯାଆସ କରିବା । ଆୟତ୍ତ, ଅନାୟତ୍ତ, ସେବାୟତ, ଉଡାୟତ

ପ୍ରଭୃତି ଶବ୍ଦର ଅନୁକରଣରେ ଏହି ଭୁଲ୍‌ଟି ଖୁବ୍ ସାଧାରଣ ହୋଇଯାଇଛି ।

ରଙ୍ଗୀନ୍ (**ରଙ୍ଗିନ**)--- ମଳଯୁକ୍ତ ଯେପରି ମଳିନ, ରଙ୍ଗଯୁକ୍ତ ସେହିପରି ରଙ୍ଗିନ (ରଙ୍ଗ — ଇନ) ।

ରବିନ୍ଦ୍ର (**ରବୀନ୍ଦ୍ର**)--- ରବି + ଇନ୍ଦ୍ର = ରବୀନ୍ଦ୍ର । ଅତି ସରଳ ସନ୍ଧି ନିୟମରେ ଏ ଶବ୍ଦଟି ନିଷ୍ପନ୍ନ ହୋଇଥିଲେ ହେଁ କଲେଜରେ ପଢୁଥିବା ଛାତ୍ରମାନେ ମଧ୍ୟ ସେମାନଙ୍କ ନାମକୁ ଅଶୁଦ୍ଧ କରି ଲେଖନ୍ତି 'ରବିନ୍ଦ୍ର' ।

ରହିସ୍ୟାବୃତ୍ତ (**ରହସ୍ୟାବୃତ**)— ଆ – ବୃ + ତ = ଆବୃତ, ଅର୍ଥାତ୍ ଆଚ୍ଛାଦିତ । ଏହା ଆବରଣ ଶବ୍ଦର ବିଶେଷଣ । ଲୋମାବୃତ, ତୁଷାରାବୃତ ଏହି ଜାତୀୟ ଶବ୍ଦ । ଶବ୍ଦର ଅର୍ଥ ବା ଗଠନ ପ୍ରତି ଦୃଷ୍ଟି ନ ଦେଇ ଜଣେ ଜଣେ 'ବୃତ୍ତ' ଶବ୍ଦକୁ ମନେ ପକାଇ ଏଥିରେ ଥିବା ତ କୁ ତ୍ତ କରିଦିଅନ୍ତି ।

ଲବ୍ଧପ୍ରତିଷ୍ଠିତ (**ଲବ୍ଧପ୍ରତିଷ୍ଠ**)— ଯେ ପ୍ରତିଷ୍ଠା (ଖ୍ୟାତି) ଲାଭ କରିଛନ୍ତି, ସେ ଲବ୍ଧପ୍ରତିଷ୍ଠ କିମ୍ବା ପ୍ରତିଷ୍ଠିତ । 'ଲବ୍ଧପ୍ରତିଷ୍ଠ' ବିଶେଷଣ ପଦ; ସେଥିରେ ପୁଣି 'ଇତ' ଲାଗିବ କାହିଁକି ?

ଶତ୍ରୁ (**ଶତ୍ରୁ**)— ଧ୍ରୁବ କୁ ଧୃବ, ଦ୍ରୁତ କୁ ଦୃତ ଏବଂ ତ୍ରୁଟିକୁ ତୃଟି ଯେଉଁମାନେ ଲେଖନ୍ତି, ସେଇମାନେ ହିଁ ଶତ୍ରୁକୁ ଶତୃ ଲେଖନ୍ତି । ଏହା ଭୁଲ୍ ।

ଶାରିରୀକ (**ଶାରୀରିକ**)— ରି ଓ ରୀ ପାଖାପାଖି ଥିବାରୁ କେଉଁଠି କେଉଁଠି ରହିବ ଜାଣି ନ ପାରି କେହି କେହି ଏ ଶବ୍ଦର ବନାନ ଭୁଲ୍ କରିଦିଅନ୍ତି । ଶରୀର + ଇକ = ଶାରୀରିକ; ରୀ ପ୍ରଥମେ ଅଛି । ତେଣୁ ସେହିପରି ରହିବ; ଇକ ପ୍ରତ୍ୟୟରେ ହ୍ରସ୍ୱ ଇକାର ଥିବାରୁ ରି ପଛରେ ରହିବ ।

ଶିକ୍ଷୟିତ୍ରୀ (**ଶିକ୍ଷୟିତ୍ରୀ**)—ପୂର୍ବର ମାଷ୍ଟ୍ରାଣୀଙ୍କୁ ଏବେ ଡକାଯାଉଛି 'ମିଷ୍ଟ୍ରେସ୍', ମିସ୍, ଦିଦି, ମାଡାମ୍, କେଉଁଠି ବା ଗୁରୁମା । ଶିକ୍ଷୟିତ୍ରୀ ଶବ୍ଦଟା କେବଳ ଲେଖାଯାଏ; ତେଣୁ ତାର ବନାନ ଆଡ଼କୁ ବେଶୀ ଦୃଷ୍ଟି ନ ଦେଇ 'ଗାୟତ୍ରୀ' ଶବ୍ଦର ଅନୁକରଣରେ ଜଣେ ଜଣେ ଲେଖନ୍ତି 'ଶିକ୍ଷୟତ୍ରୀ' । ପୁଂଲିଙ୍ଗବାଚକ ଶବ୍ଦ 'ଶିକ୍ଷକ' ଓ 'ଶିକ୍ଷୟିତା' ସ୍ତ୍ରୀଲିଙ୍ଗରେ ହୁଏ 'ଶିକ୍ଷିକା' ଓ 'ଶିକ୍ଷୟିତ୍ରୀ' ।

ଶୀକାରୀ (**ଶିକାରୀ**)—ପୂର୍ବରୁ କୁହାଯାଇଛି ଯେ ଓଡ଼ିଆରେ ହ୍ରସ୍ୱ ଇ କୁ ଦୀର୍ଘ ଈ କରିଦେବା ଅଭ୍ୟାସ ପୋଥିଲେଖା ଏବଂ ନବଶିକ୍ଷିତଙ୍କ ଦଲିଲ ଲେଖା ଦିନଠାରୁ

ରହିଆସିଛି । ସେହି କାରଣରୁ ସମ୍ଭବତଃ କେହି କେହି ଏ ଶବ୍ଦର ଶି କୁ ଶୀ କରିଦିଅନ୍ତି ।

ଶୃତଗୋଚର (**ଶ୍ରୁତଗୋଚର**)— ଧ୍ରୁବ ଓ ଶ୍ରୁତି ଦେଖ; ଶ୍ରୁ କାହିଁକି ଶୃ ହୋଇଯାଏ ଜାଣିପାରିବ ।

ଶ୍ରଦ୍ଧାଞ୍ଜଳୀ (**ଶ୍ରଦ୍ଧାଞ୍ଜଳି**)— ଶ୍ରଦ୍ଧା + ଅଞ୍ଜଳି = ଶ୍ରଦ୍ଧାଞ୍ଜଳି । 'ଅଞ୍ଜଳୀ' ବୋଲି ଶବ୍ଦ ନାହିଁ, ତେଣୁ ଳୀ ହେବ କାହିଁକି ?

ସକ୍ଷମ (**କ୍ଷମ**) – ମୁଁ ଏହା କରିବାକୁ ସଂପୂର୍ଣ୍ଣ କ୍ଷମ ବା ସମର୍ଥ କହିବା ହିଁ ଠିକ୍ । 'କ୍ଷମ'ର ବିପରୀତ 'ଅକ୍ଷମ' । 'ସକ୍ଷମ' ଶବ୍ଦଟି ଅଶୁଦ୍ଧ ହେଲେ ହେଁ 'ସଠିକ୍' ପରି ବହୁପ୍ରଚଳିତ । ଜାଣିରଖ ଯେ 'ସହ' ଅର୍ଥରେ ଶବ୍ଦ ଆରମ୍ଭରେ ସ ଲଗାଯାଏ, ଯେପରି ସ୍ନେହର ସହ ସସ୍ନେହ; ଏହିପରି ଶବ୍ଦ ସହ ସଶବ୍ଦ, ବାନ୍ଧବଙ୍କ ସହ ସବାନ୍ଧବ ଇତ୍ୟାଦି । 'ସମ' ଅର୍ଥରେ ମଧ୍ୟ ସ ଲାଗେ, ଯଥା— ସମ ଗୋତ୍ର = ସଗୋତ୍ର, ସମ ପକ୍ଷ = ସପକ୍ଷ ଇତ୍ୟାଦି ।

ସଂପର୍ଣ୍ଣ (**ସଂପନ୍ନ**)— ଉଚ୍ଚାରଣ ଦୋଷରୁ 'ଅନ୍ନ' ଅର୍ଣ୍ଣ ହେବାପରି ଏ ଭୁଲ୍ ହୋଇଥାଏ । ଏହାର ପ୍ରକୃତିପ୍ରତ୍ୟୟ (ସମ୍ – ପଦ୍ + ତ) । ସେ ଜଣେ ଖ୍ୟାତି-ସଂପନ୍ନ ବ୍ୟକ୍ତି (ଖ୍ୟାତି ସଂପର୍ଣ୍ଣ ନୁହେଁ) ।

ସଞ୍ଜମ (**ସଂଯମ**) – 'ସଂଯମ'ର ଏ ବିକୃତ ବନାନଟି ଅଳ୍ପଦିନ ହେଲା ଆଖିରେ ପଡ଼ୁଛି ।

ସଂଯମତା (**ସଂଯମ**)— ସଂଯମ ବିଶେଷ୍ୟ ପଦ, ତେଣୁ ତା ଲଗିଲେ ଭୁଲ୍ ହେବ । ଏ ସମ୍ପର୍କରେ ଅଧିକ ଜାଣିବାପାଇଁ 'ଉତ୍କର୍ଷତା' ଦେଖ ।

ସଠିକ୍ (**ଠିକ୍** ବା **ସଂପୂର୍ଣ୍ଣ ଠିକ୍**) – 'ସକ୍ଷମ' ଦେଖ ।

ସତ୍ତେ (**ସତ୍ତ୍ୱେ**)— ତାର ଏତେ ଯୋଗ୍ୟତା ଥିବା ସତ୍ତ୍ୱେ ସେ ବେକାର ହୋଇ ବସିଛି ।

ସନ୍ୟାସ (**ସନ୍ନ୍ୟାସ**)— ଏହାର ପ୍ରକୃତି ପ୍ରତ୍ୟୟ (ସମ୍ – ନି – ଅସ୍ + ଅ) । ନ୍ୟାସ ଅର୍ଥ ଏଠାରେ ପରିତ୍ୟାଗ । ଯେ ଗୃହ ସଂସାର ତ୍ୟାଗ କରିଥାନ୍ତି ତାଙ୍କୁ ସନ୍ନ୍ୟାସୀ କୁହାଯାଏ ।

ସପରିବାରରେ (**ସପରିବାର**) – ନିମନ୍ତ୍ରଣ ପତ୍ରରେ ସାଧାରଣତଃ ଏ ଅଶୁଦ୍ଧିଟି ଦେଖାଯାଏ । ସପରିବାର ଅର୍ଥ ପରିବାର ସହ; ଏଣୁ କେବଳ ଲେଖ 'ଆପଣ ଏହି ଉତ୍ସବରେ ସପରିବାର (କିମ୍ବା ସବାନ୍ଧବ) ଯୋଗ ଦେବେ ।'

ସମାସ୍ୟା (**ସମସ୍ୟା**) – କେବଳ ଅଶିକ୍ଷିତ ଲୋକଙ୍କ ତୁଣ୍ଡରୁ ଏ ଅଶୁଦ୍ଧ ଶବ୍ଦଟି ଶୁଣିବାକୁ ମିଳେ ।

ସମ୍ମାନୀୟ (**ସମ୍ମାନନୀୟ**)— ମାନ୍+ଅନୀୟ=ମାନନୀୟ; ବିଶେଷ ମାନନୀୟ= ସମ୍ମାନନୀୟ । କେହି କେହି ସଭାରେ 'ସମ୍ମାନୀୟ ସଭାପତି' ବୋଲି ସମ୍ବୋଧନ କରନ୍ତି, ମାତ୍ର ତାହା ଭୁଲ୍ ।

ସବାନ୍ଧବେ (**ସବାନ୍ଧବ**)— 'ସପରିବାରରେ' ଦେଖ ।

ସାମଗ୍ରିକ (**ସମଗ୍ର**)— 'ସମଗ୍ର' ବିଶେଷଣ ପଦ । ଆମେ କହୁ ସମଗ୍ର ଅଞ୍ଚଳ । ଏଥିରେ 'ଇକ' ପ୍ରତ୍ୟୟ ଲଗାଇଲେ ଭୁଲ୍ ହେବ । 'ଆଂଶିକ' ଶବ୍ଦର ଅନୁକରଣରେ କେହି କେହି 'ସାମଗ୍ରିକ' କରିଦିଅନ୍ତି ।

ସାମନ୍ତରିକ (**ସାମାନ୍ତରିକ**)— ମୂଳ ଶବ୍ଦ ସମାନ୍ତର; ଏଥିରେ ଇକ ପ୍ରତ୍ୟୟ ଲାଗିବାରୁ ନିୟମ ଅନୁସାରେ ପ୍ରଥମ ଅକ୍ଷର ସ ହୋଇଯିବ ସା, କିନ୍ତୁ ଦ୍ୱିତୀୟ ଅକ୍ଷର 'ମା' ମ ହେବ କାହିଁକି ?

ସାମ୍ରାଜ୍ଞୀ (**ସମ୍ରାଜ୍ଞୀ ବା ସଂରାଜ୍ଞୀ**) – ସମ୍ରାଟ ଶବ୍ଦର ସ୍ତ୍ରୀ ଲିଙ୍ଗ ସମ୍ରାଜ୍ଞୀ ବୋଲି କୌଣସି କୌଣସି ଅଭିଧାନରେ ଅଛି, ମାତ୍ର 'ସାମ୍ରାଜ୍ଞୀ' ଅଶୁଦ୍ଧ ।

ସାରଥୀ (**ସାରଥି**) – ଏହାର ପ୍ରକୃତି ପ୍ରତ୍ୟୟ (ସହ-ରଥ-ଇ); ତେଣୁ ସାରଥି ହେବ ।

ସାହାସ (**ସାହସ**) – ଉଚ୍ଚାରଣ ଦୋଷରୁ ଏ ଭୁଲ୍ ହୁଏ । 'ବାହାନ' ଦେଖ ।

ସୁନାମଧନ୍ୟ (**ସ୍ୱନାମଧନ୍ୟ**)– ଏହାର ଅର୍ଥ ସ୍ୱ ଅର୍ଥାତ୍ ନିଜ ନାମକୁ ଧନ୍ୟ କରିଛି ଯେ ।

ସୌଜନ୍ୟତା (**ସୌଜନ୍ୟ**) – ଏହା ଦାରିଦ୍ର୍ୟତା ଓ ବାତ୍ସଲ୍ୟତା ପରି ଅଶୁଦ୍ଧ । ସେହି ଶବ୍ଦ ସମ୍ପର୍କରେ ପ୍ରଦତ୍ତ ଟିପ୍ପଣୀ ଦେଖ ।

ସୌମେନ୍ଦ୍ର (**ସୌମ୍ୟେନ୍ଦ୍ର**) —ସୋମ+ଯ=ସୌମ୍ୟ ଅର୍ଥାତ୍ ସୁନ୍ଦର; ସୌମ୍ୟ+ଇନ୍ଦ୍ର=ସୌମ୍ୟେନ୍ଦ୍ର ।

ସ୍ୱତ୍ତ୍ୱ (**ସ୍ୱତ୍ୱ**)—ସ୍ୱ+ତ୍ୱ=ସ୍ୱତ୍ୱ; ଏହାର ଅର୍ଥ ମାଲିକାନା । ସତ୍ତ୍ୱ ଏକ ଭିନ୍ନ ଶବ୍ଦ । ଏହା ସତ୍—ତ୍ୱ ମିଶି ସନ୍ଧି ନିୟମରେ ତ୍ତ୍ୱ ହୁଏ । ଏହାର ଅର୍ଥ ଅସ୍ତିତ୍ୱ ଏବଂ ତ୍ରିଗୁଣ ମଧ୍ୟରୁ ପ୍ରଥମ ଗୁଣ, କିନ୍ତୁ 'ସ୍ୱତ୍ତ୍ୱ' ସମ୍ପୂର୍ଣ୍ଣ ଭୁଲ୍ ।

ସ୍ୱର୍ଗତଃ (**ସ୍ୱର୍ଗତ**)—ଯେ ସ୍ୱର୍ଗକୁ ଗତ ଅର୍ଥାତ୍ ମୃତ ସେ ସ୍ୱର୍ଗତ । ଏହାର ପ୍ରକୃତିପ୍ରତ୍ୟୟ ସ୍ୱଃ—ଗତ ।

ସ୍ୱାକ୍ଷରତା (**ସାକ୍ଷରତା**)—ସାକ୍ଷର ଏବଂ ସ୍ୱାକ୍ଷର ଦୁଇଟି ଭିନ୍ନ ଶବ୍ଦ । ସାକ୍ଷର ଅର୍ଥ ଅକ୍ଷର ଜ୍ଞାନଯୁକ୍ତ ବା ଯାହାର ଅକ୍ଷରଜ୍ଞାନ ଆସିଅଛି । ଏଥିରୁ ବିଶେଷ୍ୟରେ ତା ଲଗି ସାକ୍ଷରତା ହୁଏ । ସ୍ୱାକ୍ଷର (ସ୍ୱ—ଅକ୍ଷର) ଅର୍ଥ ଦସ୍ତଖତ । ଏହା ବିଶେଷ୍ୟ, ତେଣୁ ଏଥିରେ ତା ଲଗିବା ଭୁଲ୍ ।

ସ୍ୱାଦିଷ୍ଟ (**ସ୍ୱାଦିଷ୍ଠ**)— ସବୁଠାରୁ ସ୍ୱାଦୁ=ସ୍ୱାଦିଷ୍ଠ (ସ୍ୱାଦ+ଇଷ୍ଠ) ।

ସ୍ୱାଧିନ (**ସ୍ୱାଧୀନ**)— ସ୍ୱ+ଅଧୀନ=ସ୍ୱାଧୀନ । ଯେଉଁମାନେ 'ଅଧୀନ'କୁ ଅଧିନ ଲେଖନ୍ତି, ସେଇମାନେ ହିଁ ଏ ଭୁଲ୍ କରନ୍ତି ।

ସ୍ୱାଧୀନୋତ୍ତର (**ସ୍ୱାଧୀନତୋତ୍ତର** ବା **ସ୍ୱାଧୀନତା ପରବର୍ତ୍ତୀ**)—ଉତ୍ତର ଅର୍ଥ ପରବର୍ତ୍ତୀ, ତେଣୁ ଏହା ବିଶେଷ୍ୟ ପଦ ପରେ ବସେ, ଯଥା – ମରଣ ପରବର୍ତ୍ତୀ ମରଣୋତ୍ତର । ସେହିପରି ଅନ୍ୟ ଶବ୍ଦ ଯୁଦ୍ଧୋତ୍ତର, ଉପାଧ୍ୟୁତ୍ତର ପ୍ରଭୃତି । ସ୍ୱାଧୀନ ଏକ ବିଶେଷଣ ପଦ ହୋଇଥିବାରୁ ତାହା ପରେ 'ଉତ୍ତର' ବସିବା ଭୁଲ୍ । ତେଣୁ ସ୍ୱାଧୀନତା+ଉତ୍ତର=ସ୍ୱାଧୀନତୋତ୍ତର । ଏହି ଶବ୍ଦଟି ସାମାନ୍ୟ କ୍ଲିଷ୍ଟ ହେଉଥିବାରୁ ସେହି ଅର୍ଥ ପ୍ରକାଶ କରିବାକୁ ଆମେ କହିପାରିବା 'ସ୍ୱାଧୀନତା ପରବର୍ତ୍ତୀ' ।

ହୃଷ୍ଟପୃଷ୍ଟ (**ହୃଷ୍ଟପୁଷ୍ଟ**)— ପୁଷ୍ଟ ଓ ପୃଷ୍ଟ ଦୁଇଟି ଭିନ୍ନ ଶବ୍ଦ । ପ୍ରଥମଟିର ବ୍ୟୁତ୍ପତ୍ତି ପୁଷ୍+ତ=ପୁଷ୍ଟ ଅର୍ଥାତ୍ ବୃଦ୍ଧିପ୍ରାପ୍ତ । ଆମେ ଯେଉଁ ଅର୍ଥରେ କହୁଁ, ତାହା 'ହୃଷ୍ଟପୁଷ୍ଟ' । 'ପୃଷ୍ଟ' (ପ୍ରଚ୍ଛ୍+ତ)ର ଅର୍ଥ ଜିଜ୍ଞାସିତ, ଯାହା ପଚରାଯାଇ-ଅଛି । ପ୍ରଥମ ଶବ୍ଦଟି ହୃଷ୍ଟ ଥିବାରୁ ତା ସଙ୍ଗେ ମିଶି ପୃଷ୍ଟ କହି ହୋଇଯାଏ ।

## (ଖ) ବାକ୍ୟ

ବିଭିନ୍ନ ପୁସ୍ତକ ଓ ପତ୍ରପତ୍ରିକାରୁ ଏବଂ 'ସଂସାର'ରେ ପ୍ରକାଶ ପାଇଁ ଆସୁଥିବା ଲେଖାରୁ ଆମେ ଯେଉଁ ଅଶୁଦ୍ଧ ବାକ୍ୟଗୁଡ଼ିକ ମଝେ ମଝେ ପାଇଛୁ ଏବଂ 'ଲେଖାର ପାଠଶାଳା' ବିଭାଗରେ ଆଲୋଚନା କରିଛୁ, ସେଥିମଧ୍ୟରୁ ଏଠାରେ କେତେକଟି ଦିଆଯାଉଛି । ଏଗୁଡ଼ିକ ବାକ୍ୟ ହୋଇଥିବାରୁ ବର୍ଣ୍ଣାନୁକ୍ରମିକ ଭାବେ ଦିଆଗଲା ନାହିଁ । ପ୍ରଥମେ ଭୁଲ୍ ବାକ୍ୟଟି ଦିଆଯାଇ ପରେ ସଂଶୋଧିତ ବାକ୍ୟଟି ଦିଆଯାଇଛି ।

୧ । ଏହାଦ୍ୱାରା ଜାତି ଉନ୍ନତି ହେବା ସମ୍ଭବ ନୁହେଁ ।

— 'ଜାତିର ଉନ୍ନତି ହେବା' କିମ୍ବା 'ଜାତି ଉନ୍ନତ ହେବା' କର ।

୨ । କାଶ୍ମୀରର ରାଜା ଜଣେ ପ୍ରଜାବତ୍ସଳ ଥିଲେ ।

— ଏ ବାକ୍ୟରୁ 'ଜଣେ' କାଢ଼ିଦିଅ କିମ୍ବା 'ପ୍ରଜାବତ୍ସଳ' ପରେ ଗୋଟିଏ ବିଶେଷ୍ୟ ପଦ ଦିଅ, ଯଥା—ପ୍ରଜାବତ୍ସଳ ଶାସକ ଥିଲେ ।

୩ । କମଳବାବୁଙ୍କର ପିଲାପିଲି ନାହାନ୍ତି । ସେ ନିଃସନ୍ତାନ ।

— ଏଠାରେ ଏକା କଥାକୁ ଦୁଇଥର କୁହାଯାଇଥିବାରୁ ପୁନରୁକ୍ତି ଦୋଷ ଘଟିଲା। କେବଳ ପ୍ରଥମ ବାକ୍ୟଟି କହିଲେ ଚଳିବ ।

୪ । ଖବରଟା ଗୃହଆଡ଼େ ବ୍ୟାପୀଯାଇଛି ।

— ଏଠାରେ 'ବ୍ୟାପିଯାଇଛି' ହେବ । ବିଶେଷଣରେ 'ବ୍ୟାପୀ' କରାଯାଏ, ଯେପରି ସପ୍ତାହବ୍ୟାପୀ ପୂଜା ଅନୁଷ୍ଠିତ ହେଲା ।

୫ । ସମସ୍ତେ ଏକାଠି ହୋଇ ଏକ ସଭା କରାଯିବ ।

— ଏ ବାକ୍ୟର ଦୁଇଟି ଅଂଶ ହେଲା (କ) ସମସ୍ତେ ଏକାଠି ହୋଇ (ଖ) ଏକ ସଭା କରାଯିବ । ପ୍ରଥମାଂଶର କର୍ତ୍ତା 'ସମସ୍ତେ' । ତାର ସମାପିକା କ୍ରିୟା ନ ଥିବାରୁ ଅସଂପୂର୍ଣ୍ଣ ଲାଗୁଛି । ବାକ୍ୟଟି ସମ୍ପୂର୍ଣ୍ଣ ହେବ ଯଦି କୁହାଯାଏ—ସମସ୍ତେ ଏକାଠି ହୋଇ ଏକ ସଭା କରିବେ କିମ୍ବା ସମସ୍ତେ ଏକାଠି ହେଲେ ଏକ ସଭା କରାଯିବ ।

୬ । ସବୁ ପିଲାଏ ଏକ ସ୍ୱରରେ ପାଟିକରି ଉଠିଲେ ।
—'ପିଲାଏ' ଅର୍ଥ ପିଲାମାନେ; ପିଲାମାନେ ପୂର୍ବରୁ 'ସବୁ' ବସିଲେ ଭୁଲ୍ ହେବ । ତେଣୁ କେବଳ 'ସବୁ ପିଲା······ଉଠିଲେ' କହିଲେ ଠିକ୍ ହେବ ।

୭ । ଏଡସନ୍ କାହାର ଉଦ୍ଭାବନ କରିଥିଲେ ?
— ଏଡସନ୍ କଣ ଉଦ୍ଭାବନ କରିଥିଲେ ?

୮ । ଘରଟି ଲକ୍ଷେ ଟଙ୍କା ଖର୍ଚ୍ଚ କରି ତିଆରି ହୋଇଥିଲା ।
— ଏ ବାକ୍ୟରେ 'ଘରଟି' ତିଆରି ହୋଇଥିଲା କ୍ରିୟାର କର୍ତ୍ତା । ତେବେ 'ଖର୍ଚ୍ଚ କରି କ୍ରିୟାର କର୍ତ୍ତା କିଏ ? ତେଣୁ ବାକ୍ୟଟି ହେବ—ଘରଟି ଲକ୍ଷେ ଟଙ୍କା ଖର୍ଚ୍ଚରେ ତିଆରି ହୋଇଥିଲା । ଏଠାରେ 'ଖର୍ଚ୍ଚ' ବିଶେଷ୍ୟ ହୋଇଗଲା ।

୯ । ଅତି ଲେମ୍ବୁ ଚିପୁଡ଼ିଲେ ପିତା ।
— ଲେମ୍ବୁ ଅତି ଚିପୁଡ଼ିଲେ ପିତା । (ଅତି 'ଚିପୁଡ଼ିଲେ' କ୍ରିୟାର ବିଶେଷଣ)

୧୦ । ଯାହା କହୁଛ ସଂକ୍ଷିପ୍ତରେ କହ ।
— ଯାହା କହୁଛ ସଂକ୍ଷେପରେ କହ । ସଂକ୍ଷିପ୍ତ ବିଶେଷଣ, ସେଥିରେ ବିଭକ୍ତି ଚିହ୍ନ ଲାଗିବ ନାହିଁ ।

୧୧ । ଶବମାନଙ୍କୁ ଯଥାବିଧି କବର ଦିଆଗଲା ।
— 'ଶବଗୁଡ଼ିକୁ' କଲେ ଠିକ୍ ହେବ, କାରଣ 'ମାନେ', 'ମାନଙ୍କୁ' କେବଳ ଜୀବିତ ପ୍ରାଣୀଙ୍କଠାରେ ଲାଗେ ।

୧୨ । ଦୀର୍ଘକାଳ ଜ୍ୱର ଭୋଗି ଭୋଗି ତାଙ୍କ ଶୁଖିଗଲା ।
— ଦୀର୍ଘକାଳ···ଭୋଗି ସେ ଶୁଖିଗଲେ । (୮ ନଂ ପ୍ରଶ୍ନ ଦେଖ) କିମ୍ବା ସେ ଦୀର୍ଘକାଳ ଜ୍ୱର ଭୋଗିବା ଫଳରେ ତାଙ୍କ ଶୁଖିଗଲା ।

୧୩ । ଏବେ ବି ମଧ୍ୟ ସେ ବଞ୍ଚିଛି ।
— ଏବେ ମଧ୍ୟ ସେ ବଞ୍ଚିଛି । (ବି ଓ ମଧ୍ୟ ଏକା ଅର୍ଥ ବୁଝାଏ; ତେଣୁ ଗୋଟିଏ ରଖିଲେ ଠିକ୍ ହେବ ।)

୧୪ । ମୁଁ ବହୁତ ବୁଝାଇଲି, ତଥାପି ମଧ୍ୟ ସେ ଶୁଣିଲା ନାହିଁ ।
— ଏ ବାକ୍ୟଟି ପୂର୍ବ ବାକ୍ୟପରି ଭୁଲ୍ । 'ତଥାପି' ସାଙ୍ଗରେ 'ମଧ୍ୟ' ରଖିବା ଅଶୁଦ୍ଧ; ତେଣୁ 'ମଧ୍ୟ' ଶବ୍ଦଟି କାଢ଼ିଦିଅ ।

୧୫ । ଶହ ଶହ ଲୋକମାନେ ଏହା ଦେଖୁଥିଲେ ।

—ଏଠାରେ ଲୋକମାନେ ନ ହୋଇ କେବଳ 'ଲୋକ' ହେବ । ବହୁବଚନ ହେଲେ ସୁଦ୍ଧା ପୂର୍ବରୁ ସଂଖ୍ୟାବାଚକ ବିଶେଷଣ ଥିଲେ ଓଡ଼ିଆରେ ବହୁବଚନ ଚିହ୍ନ ଦିଆଯାଏ ନାହିଁ । ସଂସ୍କୃତରେ ହୁଏ 'ବହବଃ ବାଳକାଃ', ଇଂରାଜୀରେ ହୁଏ **'many boys'**, କିନ୍ତୁ ଓଡ଼ିଆରେ କେବଳ 'ଅନେକ ପିଲା' ହୁଏ । ଅନେକ ପିଲାମାନେ, ପାଞ୍ଚଟା ବହିଗୁଡ଼ାକ, ଦୁଇଶହ ଟଙ୍କାସବୁ ଲେଖିଲେ ଭୁଲ୍ ହେବ ।

୧୬ । ଧାର୍ମିକ ସ୍ଥାନରେ ଗୁଣ୍ଡା ଉପଦ୍ରବ ବଢ଼ୁଛି ।

— 'ଧାର୍ମିକ' ଅର୍ଥ ଧର୍ମ ସମ୍ବନ୍ଧୀୟ ହେଲେ ହେଁ ଏହା ମନୁଷ୍ୟର ବିଶେଷଣ ରୂପେ ସାଧାରଣତଃ ବ୍ୟବହୃତ ହୁଏ । ତେଣୁ ଧର୍ମ ସ୍ଥାନମାନଙ୍କରେ କିମ୍ବା ଧର୍ମୀୟ-ସ୍ଥାନମାନଙ୍କରେ ଗୁଣ୍ଡା ଉପଦ୍ରବ ବଢ଼ୁଛି କହିଲେ ଠିକ୍ ହେବ । ସେହିପରି ବୈଜ୍ଞାନିକ ସଭା ଓ ସାହିତ୍ୟିକ ପତ୍ରିକା ବଦଳରେ ବିଜ୍ଞାନସଭା ଓ ସାହିତ୍ୟ ପତ୍ରିକା ଲେଖିବା ଅଧିକ ସମୀଚୀନ ।

୧୭ । ତାହାଲେ ସବୁ ଚେଷ୍ଟା ପଣ୍ଡ ହେବ ।

— 'ତାହାଲେ' ବୋଲି କୌଣସି ଶବ୍ଦ ନାହିଁ । 'ତାହାହେଲେ' ଲେଖ । ଏ ଭୁଲ୍ ଅନେକଙ୍କ ଲେଖାରେ ଦେଖାଯାଏ । 'ତା' ହେଲେ' ଲେଖିଲେ ମଧ୍ୟ ଚଳିବ ।

୧୮ । ତାଙ୍କୁ କ୍ଷମା ଭିକ୍ଷା ମାଗ ।

—'ତାଙ୍କୁ କ୍ଷମା ମାଗ'—କେବଳ ଏତିକ କହିଲେ ଅର୍ଥ ବୁଝାଇବ ।

୧୯ । ପ୍ରତି ଘରେ ଘରେ ଦୀପ ଜାଳ ।

— ପ୍ରତି ଘରେ (କିମ୍ବା ଘରେ ଘରେ) ଦୀପ ଜାଳ ।

୨୦ । କେତେକ ପିଲାମାନେ ପଢ଼ାଶ୍ରଲରୁ କଳି ଲାଗିଲା ।

— ଏ ବାକ୍ୟରେ ଦୁଇଟି ଅଶୁଦ୍ଧି ଅଛି । 'କେତେକ ପିଲାମାନେ' ସ୍ଥାନରେ କେବଳ ହେବ 'କେତେକ ପିଲା' । 'ପଢ଼ାଶ୍ରଲରୁ' ସ୍ଥାନରେ ହେବ 'ପଢ଼ାଶ୍ରବାରୁ', କାରଣ ରୁ ବିଭକ୍ତି ଚିହ୍ନ ବିଶେଷ୍ୟ ପଦରେ ଲାଗିବା ନିୟମ । ପଢ଼ାଶ୍ରଲ ଶବ୍ଦଟି କ୍ରିୟା, ମାତ୍ର 'ପଢ଼ାଶ୍ରବା' କ୍ରିୟାବାଚକ ବିଶେଷ୍ୟ । 'ଗଲାରୁ', 'ଗଲାବେଳେ' 'ଗଲାପର୍ଯ୍ୟନ୍ତ' ନ ଲେଖି ଯିବାରୁ, ଯିବାବେଳେ, ଯିବା ପର୍ଯ୍ୟନ୍ତ ଲେଖ ।

୨୧ । ବଜ୍ରପାତ ଫଳରେ ଭୟାବହ ଅଗ୍ନିକାଣ୍ଡ ସଂଗଠିତ ହେଲା ।
— ଏଠାରେ ସଂଗଠିତ ନ ହୋଇ 'ସଂଘଟିତ ହେଲା' ହେବ, କାରଣ ଅଗ୍ନି-କାଣ୍ଡକୁ କେହି ଗଢ଼ି ନ ଥିଲେ । ଏହା ଘଟିଥିଲା ।

୨୨ । ମୋତେ ଅନେକ କଷ୍ଟ ହେଉଛି ।
— ଏଠାରେ 'ଅନେକ' ବଦଳରେ 'ବହୁତ' କଷ୍ଟ ବା ବିଶେଷ କଷ୍ଟ କହିଲେ ଠିକ୍ ହେବ । ଯାହା ଗଣାଯାଇପାରେ, ତାହାକୁ ଏକ ବା ଅନେକ ବୁଝାଯାଏ, ଯେପରି ଅନେକ ପକ୍ଷୀ, ଅନେକ ଗଛ ଇତ୍ୟାଦି । 'ଅନେକ' ସଂଖ୍ୟାବାଚକ ଓ 'ବହୁତ' ପରିମାଣବାଚକ ବିଶେଷଣ ।

୨୩ । ସେ ଦୃଶ୍ୟ ଦେଖି ମୁଁ କ୍ଷଣିକ ପାଇଁ ମୁଗ୍ଧ ହେଲି ।
— 'କ୍ଷଣିକ ପାଇଁ' ସ୍ଥାନରେ 'କ୍ଷଣେକପାଇଁ' ହେବ; କାରଣ କ୍ଷଣିକ ଏକ ବିଶେଷଣ ପଦ । ବୁଝାଯାଏ କ୍ଷଣିକ ଆନନ୍ଦ, କ୍ଷଣିକ ଅଶାନ୍ତି ଇତ୍ୟାଦି ।

୨୪ । 'ଯାହା ପୁଅକୁ ସାପ କାମୁଡ଼େ, ତା ମା' ଗାଳଦଉଡ଼ି ଦେଖିଲେ ଡରେ ।'
— ଏ ପ୍ରବଚନଟି ଭୁଲ୍ । ଶୁଦ୍ଧ ବାକ୍ୟଟି ହେବ—ଯେଉଁ ପିଲାକୁ ସାପ କାମୁଡ଼େ, ତା ମା' ଗାଳଦଉଡ଼ି ଦେଖିଲେ ଡରେ, କିମ୍ବା ଯାହା ପୁଅକୁ ସାପ କାମୁଡ଼େ, ସେ ଗାଳଦଉଡ଼ି ଦେଖିଲେ ଡରେ ।

୨୫ । ତୁମେ କବିସୂର୍ଯ୍ୟଙ୍କ କିଶୋର ଚନ୍ଦ୍ରାନନ ଚମ୍ପୂ ପଢ଼ିଛ ?
— ବହିଟିର ନାମ 'କିଶୋରଚନ୍ଦ୍ରାନନଚମ୍ପୂ' (ଚନ୍ଦ୍ରାନନ ଚମ୍ପୂ ନୁହେଁ) ।

୨୬ । ସବୁ ପିଲାମାନେ ହାଟଠାରେ ଏକତ୍ରିତ ହେଲେ ।
— ଏ ବାକ୍ୟରେ ଦୁଇଟି ଭୁଲ୍ ଅଛି । 'ସବୁ ପିଲାମାନେ' ନ ହୋଇ ହେବ 'ସବୁ ପିଲା' ଏବଂ 'ଏକତ୍ରିତ ହେଲେ' ସ୍ଥାନରେ ହେବ 'ଏକତ୍ର ହେଲେ' ।

୨୭ । ସେ ଯଦିବା ଉଚ୍ଚଶିକ୍ଷିତ, କିନ୍ତୁ ତାଙ୍କର ବୁଦ୍ଧି କମ୍ ।
—ଏଠାରେ କିନ୍ତୁ ରହିଲେ ଭୁଲ୍ ହେବ । କେବଳ 'ସେ ଯଦିବା ଉଚ୍ଚଶିକ୍ଷିତ, ତାଙ୍କର ବୁଦ୍ଧି କମ୍'—ଏହାହିଁ ଶୁଦ୍ଧ ।

୨୮ । ଖାଇ ବସିଲେ ନଈବାଲି ସରେ ।
— ବସି ଖାଇଲେ ନଈବାଲି ସରେ । ଦ୍ୱିତୀୟ ବାକ୍ୟଟି ଅଧିକ ଅର୍ଥବୋଧକ ।

୨୯ । ଶିକ୍ଷକ ଜାଣିଲେ କାଳେ ବିରକ୍ତ ହେବେ, ଏହି ଆଶାରେ ଆମେ ପଳାଇଗଲୁ ।
— ଏ ବାକ୍ୟରେ 'ଆଶାରେ' ସ୍ଥାନରେ 'ଆଶଙ୍କାରେ' ବା 'ଭୟରେ' କଲେ ଠିକ୍ ହେବ । କୌଣସି ସୁଖକର ବିଷୟ ପାଇବାର ଥିଲେ 'ଆଶାରେ' ବ୍ୟବହାର କରାଯାଏ, ଯଥା—ମୁଁ ପୁରସ୍କାର ପାଇବା ଆଶାରେ ପରିଶ୍ରମ କଲି । କିନ୍ତୁ ଶିକ୍ଷକଙ୍କ ବିରକ୍ତିଟା ତ ସୁଖକର ନୁହେଁ; ଏଣୁ ଏଠାରେ 'ଆଶା' ପ୍ରୟୋଗ ଭୁଲ ।

୩୦ । ହୋଟେଲରେ ଖାଦ୍ୟ ଆଣିବାକୁ ବରାଦ ଦେଇ ଆମ ଭିତରେ ପୁଣି କଥାବାର୍ତ୍ତା ଚାଲିଲା ।
— ଏ ବାକ୍ୟରେ 'ବରାଦ ଦେଇ' ଓ 'ଚାଲିଲା' ଏ ଦୁଇଟିର କର୍ତ୍ତା ଯଥାକ୍ରମେ 'ଆମେ' ଓ 'କଥାବାର୍ତ୍ତା' । ଉଭୟ କ୍ରିୟାର ଗୋଟିଏ କର୍ତ୍ତା ରହିଲେ ବାକ୍ୟଟି ଶୁଦ୍ଧ ଓ ସୁବୋଧ ହେବ, ଯଥା—ହୋଟେଲରେ ଖାଦ୍ୟ ଆଣିବାକୁ ବରାଦ ଦେଇ ଆମେ କଥାବାର୍ତ୍ତାରେ ମନ ଦେଲୁ ।

୩୧ । ଯୋଜନାରେ ବାଧାପ୍ରାପ୍ତ କରିବାକୁ ସେ କିଏ ?
— ଠିକ୍ ବାକ୍ୟଟି ହେବ 'ଯୋଜନାରେ ବାଧା ଦେବାକୁ ସେ କିଏ ?'

୩୨ । ଆମେ ସମସ୍ତେ ତାଙ୍କୁ ନେତା ବୋଲି ଅବହିତ କରୁଥିବାବେଳେ ତୁମେ କିପରି ତାଙ୍କୁ ଅବଜ୍ଞା କରୁଛ ?
— ଏ ବାକ୍ୟରେ ଅବହିତ ଭୁଲ୍ । ଠିକ୍ ଶବ୍ଦଟି ହେବ 'ଅଭିହିତ' । ଏ ଦୁଇଟି ଶବ୍ଦର ଅର୍ଥ ଭିନ୍ନ । ଅଭିହିତ=କଥିତ, ଅବହିତ=ଅନୁଚିତ ।

୩୩ । ଅଧିକାଂଶ ଲୋକ ମେଣ୍ଢା ଭଳିଆ ସେ ଯାହା କହୁଛି, ସେମାନେ ତାହା ବିଶ୍ୱାସ କରିଯାଉଛନ୍ତି ।
—ଏ ବାକ୍ୟରେ କେତେକ ଶବ୍ଦ ଓ ବାକ୍ୟାଂଶ ଠିକ୍ ସ୍ଥାନରେ ବସିନାହିଁ । ଏଥିରୁ ଅର୍ଥ ବାହାରୁଛି ଯେ ସେ ମେଣ୍ଢା ଭଳିଆ କହୁଛି, କିନ୍ତୁ ତା ନୁହେଁ । ଠିକ୍ ବାକ୍ୟଟି ହେବ—ସେ ଯାହା କହୁଛି, ଅଧିକାଂଶ ଲୋକ ତାହା ମେଣ୍ଢାଭଳିଆ ବିଶ୍ୱାସ କରିଯାଉଛନ୍ତି ।

୩୪ । ସେ ନା ଖାଇଲା ନା ସେଠାରେ ରହିଲା ।
— ଏ ବାକ୍ୟ ଓଡ଼ିଆ ନୁହେଁ; ହିନ୍ଦୀ କଥନ ଶୈଳୀରେ ଲେଖା । ଅନୁବାଦକ ଯଦି ଲେଖିଥାନ୍ତେ—'ସେ ଖାଇଲା ନାହିଁ କି ସେଠାରେ ରହିଲା ନାହିଁ', ତେବେ ବାକ୍ୟଟି ଓଡ଼ିଆ ହୋଇଥାନ୍ତା ।

୩୫ । ସେ ସ୍ବୈର, ଡକାଏତ ଓ ମଣିଷ ମାର ଧନ ଅର୍ଜିଛନ୍ତି ।
— ଏ ବାକ୍ୟଟି ଅଶୁଦ୍ଧ, କାରଣ ସ୍ବୈର, ଡକାଏତ ଓ ମଣିଷ—ଏ ତିନୋଟି ପ୍ରତି 'ମାର' ପ୍ରଯୋଜ୍ୟ ନୁହେଁ । ଏହା ଠିକ୍ ହୋଇଥାନ୍ତା ଯଦି ଲେଖା ଯାଇଥାନ୍ତା—ସେ ସ୍ବୈର ଡକାଏତି କରି ଓ ମଣିଷ ମାରି ଧନ ଅର୍ଜିଛନ୍ତି । ସେ ଗୃହବାସ ଓ ପରିବା-ପରି ବିକି ଚଳେ—ଏ ବାକ୍ୟଟି ସେହି କାରଣରୁ ଭୁଲ୍ । ଠିକ୍ ବାକ୍ୟଟି ହେବ—ସେ ଗୃହବାସ କରି ଓ ପରିବାପରି ବିକି ଚଳେ ।

୩୬ । ସେ ସହଜରେ ସମସ୍ତଙ୍କୁ ଆୟତ୍ତାଧୀନ କରିଛନ୍ତି ।
— ଆୟତ୍ତର ଅଧୀନ=ଆୟତ୍ତାଧୀନ; କିନ୍ତୁ ଏହା ଭୁଲ୍ । କୁହାଯାଏ ଶାସନାଧୀନ, ନିୟନ୍ତ୍ରଣାଧୀନ; ଏଠାରେ ଶାସନ ଓ ନିୟନ୍ତ୍ରଣ ବିଶେଷ୍ୟ ପଦ, ମାତ୍ର ଆୟତ୍ତ ବିଶେଷଣ; ତେଣୁ ଏ ଶବ୍ଦଟି ଭୁଲ୍ । କେବଳ କୁହାଯିବ 'ଆୟତ୍ତ କରିଛନ୍ତି' ।

୩୭ । ବାର୍ଦ୍ଧକ୍ୟାବସ୍ଥାରେ ଅଧିକ ବିଶ୍ରାମ ଆବଶ୍ୟକ ।
— ବୃଦ୍ଧ ଅବସ୍ଥାକୁ ବାର୍ଦ୍ଧକ୍ୟ କୁହାଯାଏ । ତେଣୁ ବାର୍ଦ୍ଧକ୍ୟାବସ୍ଥା ବା ବାଲ୍ୟାବସ୍ଥା କହିଲେ ପୁନରୁକ୍ତି ଦୋଷ ହେଉଛି । କେବଳ ହେବ—ବାର୍ଦ୍ଧକ୍ୟରେ (ବା ବୃଦ୍ଧାବସ୍ଥାରେ) ଅଧିକ ବିଶ୍ରାମ ଆବଶ୍ୟକ ।

୩୮ । ସେ ଲୋକଟା ଉନ୍ମାଦ ପରି ଗର୍ଜି ଉଠିଲା ।
— ଉନ୍ମାଦ ଏକ ବିଶେଷ୍ୟ ପଦ । ଏଠାରେ ଠିକ୍ ହେବ 'ସେ ଉନ୍ମତ୍ତ ପରି (ଅର୍ଥାତ୍ ପାଗଳ ପରି) ଗର୍ଜିଉଠିଲା' ।

୩୯ । ମୁଁ ଗୋଟିଏ ସ୍ରୋତରେ ବୁଲୁଥିବା ମୃଗ ଶିଶୁଟିଏ ଦେଖିଲି ।
— 'ଗୋଟିଏ···ମୃଗଶିଶୁଟିଏ' କହିଲେ ଦ୍ୱିରୁକ୍ତି ଦୋଷ ହେଉଛି, ତେଣୁ 'ଗୋଟିଏ ମୃଗଶିଶୁ' କିମ୍ବା କେବଳ 'ମୃଗଶିଶୁଟିଏ' ଲେଖ ।

୪୦ । ପ୍ରତ୍ୟେକଙ୍କୁ ରାସ୍ତାର ନିୟମ ଓ ସାବଧାନତା ଅବଲମ୍ବନ କରିବା ଉଚିତ ।
—'ପ୍ରତ୍ୟେକଙ୍କୁ·····ଉଚିତ' ଠିକ୍ ପ୍ରୟୋଗ ନୁହେଁ, ପ୍ରତ୍ୟେକଙ୍କର···ଉଚିତ ଠିକ୍ ହେବ । ତା ଛଡ଼ା ଯଦି କୁହାଯାଏ 'ପ୍ରତ୍ୟେକଙ୍କର ରାସ୍ତାର ନିୟମ ମାନିବା ଓ ସାବଧାନତା ଅବଲମ୍ବନ କରିବା ଉଚିତ', ତେବେ ଅଧିକ ସଂଗତ ହେବ ।

୪୧ । ସେଥିରୁ ସଦାବେଳେ ପାଣି ବାହାରୁଥାଏ ।
କାଳାର୍ଥରେ ଦା ପ୍ରତ୍ୟୟ ହୁଏ; ଯେପରି ଏକକାଳରେ—ଏକଦା, ସବୁକାଳରେ—

ସଦା ବା ସର୍ବଦା । ତେଣୁ ସବୁବେଳେ କିମ୍ବା ସର୍ବଦା କହିବା ଠିକ୍ । 'ସଦାବେଳେ' କହିଲେ ଭୁଲ୍ ହେବ ।

୪୨ । ପ୍ରତ୍ୟେକ ପିଲାମାନେ ବହି କଣିବାକୁ ବାଧ୍ୟ ।

– ପ୍ରତି+ଏକ=ପ୍ରତ୍ୟେକ; ଏହା ଏକବଚନ । ତେଣୁ ପ୍ରତ୍ୟେକ ପିଲାମାନେ ସ୍ଥାନରେ କେବଳ 'ପ୍ରତ୍ୟେକ ପିଲା' ହେବ ।

୪୩ । ଏ ଖାତାଟି ସଂଶୋଧନ ହୋଇନାହିଁ ।

— 'ସଂଶୋଧିତ ହୋଇନାହିଁ' କଲେ ଠିକ୍ ହେବ ।

୪୪ । ଏ କ୍ୟାମେରାଟି ଜର୍ମାନ୍‌ରୁ ଆସିଛି ।

— ଦେଶର ନାମ ଜର୍ମାନ୍ ନୁହେଁ, ଜର୍ମାନୀ; ସେ ଦେଶର ଭାଷା ଓ ଲୋକଙ୍କୁ ଜର୍ମାନ୍ କୁହାଯାଏ । ତେଣୁ 'ଜର୍ମାନୀରୁ ଆସିଛି' କହିବା ଠିକ୍ ।

୪୫ । ବୃହତ୍ତମ ଓ କ୍ଷୁଦ୍ରତ୍ତମ ସଂଖ୍ୟା ଦୁଇଟି ଲେଖ ।

— ବୃହତ୍ତମ ଓ କ୍ଷୁଦ୍ରତମ ସଂଖ୍ୟା ଦୁଇଟି ଲେଖ । ବୃହତ୍+ତମ=ବୃହତ୍ତମ; ଏଠାରେ ସିନା ତ୍ ଓ ତ ମିଶି ତ୍ତ ହୋଇଛି, କ୍ଷୁଦ୍ରରେ ତମ ମିଶିଲେ କାହିଁକି ତ୍ତ ହେବ ?

୪୬ । ଆନନ୍ଦରେ ତାଙ୍କର ସୀମା ରହିଲା ନାହିଁ ।

— ସୀମା କାହାର ରହିଲା ନାହିଁ ? — ତାଙ୍କର ନା ତାଙ୍କ ଆନନ୍ଦର ? ଠିକ୍ ବାକ୍ୟଟି ହେବ—ତାଙ୍କ ଆନନ୍ଦର ସୀମା ରହିଲାନାହିଁ ।

୪୭ । ଏ କୋଠାଟି କେବେ ଓ କିଏ ତିଆରି କରିଛି ?

– ଶୁଦ୍ଧ ବାକ୍ୟଟି ହେବ – ଏ କୋଠାଟିକୁ କିଏ କେବେ ତିଆରି କରିଛି କିମ୍ବା ଏ କୋଠାଟି କେବେ ତିଆରି ହୋଇଛି ଓ କିଏ ତିଆରି କରିଛି ?

୪୮ । ସ୍ଟେଜରେ ଗୋପାଳ ପ୍ରହରାଜଙ୍କ 'ଗଣେଶ' ଏକାଙ୍କିକା ଅଭିନୀତ ହୋଇଥିଲା ।

– ଏ ବାକ୍ୟରେ ତଥ୍ୟ ଭୁଲ୍ ଅଛି । ଏକାଙ୍କିକାଟିର ପ୍ରକୃତ ନାମ 'ଶ୍ରୀଗଣେଶ' ଏବଂ ଏହାର ଲେଖକ ଗୋପାଳ ପ୍ରହରାଜ ନୁହନ୍ତି, ଗୋପାଳ ଛୋଟରାୟ ।

୪୯ । ଆମ ସମିତିର ସଭ୍ୟ ସଂଖ୍ୟା ୧୫ ଜଣ ଅଟନ୍ତି ।

– ସଂଖ୍ୟା ୧୫ ଜଣ ନୁହେଁ, କେବଳ ୧୫; ଅନ୍ୟ ଭୁଲ୍‌ଟି 'ଅଟନ୍ତି' । ଏ କ୍ରିୟାର କର୍ତ୍ତା 'ସଂଖ୍ୟା', ତେଣୁ 'ଅଟେ' ହେବ । ଠିକ୍ ବାକ୍ୟଟି—ଆମ ସମିତିର ସଭ୍ୟ ସଂଖ୍ୟା ୧୫ ଅଟେ ।

୫୦ । ମନ୍ତ୍ରୀ ମହାଶୟ ସଦୟ ପୂର୍ବକ କୃଷକଙ୍କୁ ଋଣ ଦେଲେ ।
—'ସଦୟ ପୂର୍ବକ' ଭୁଲ୍ । ଠିକ୍ ହେବ 'ସଦୟ ହୋଇ' କିମ୍ବା 'ଦୟାପୂର୍ବକ' ।

୫୧ । କୌଳିକ ପରମ୍ପରା ଅମଳରୁ ଛେଳି କାଟିବା ତାର ବୃତ୍ତି ।
—ପରମ୍ପରା ଅଗ୍ରତର ଧାରାକୁ ବୁଝାଏ, କୌଣସି ନିର୍ଦ୍ଦିଷ୍ଟ ସମୟକୁ ବୁଝାଏନାହିଁ । ଆମେ କହୁଁ 'ବାପ ଅଜାଙ୍କ ଅମଳରୁ', 'ବ୍ରିଟିଶ ଶାସନ ଅମଳରୁ' ଅର୍ଥାତ୍ ସେହି କାଳରୁ । ଏଠାରେ 'କୌଳିକ ପରମ୍ପରା ଅମଳରୁ' ସ୍ଥାନରେ 'କୌଳିକ ପରମ୍ପରା ଅନୁସାରେ' ହେବ ।

୫୨ । ହତ୍ୟା ମୁହଁରୁ ବଞ୍ଚିତ ହୋଇ ସେ ବଣକୁ ପଳାଇଲା ।
—'ହତ୍ୟା ମୁହଁରୁ ବଞ୍ଚିତ ହୋଇ' ସ୍ଥାନରେ ଲେଖ 'ହତ୍ୟା ମୁହଁରୁ ରକ୍ଷା ପାଇ' । 'ବଞ୍ଚିତ'ର ପ୍ରୟୋଗ ଏହିପରି—ଦୁଇଟି ନମ୍ବର କମ୍ ରଖିଥିବାରୁ ମୁଁ ବୃତ୍ତି ପାଇବାରୁ ବଞ୍ଚିତ ହେଲି । ଯାହା ପାଇଥିଲେ ଭଲ ହୋଇଥାନ୍ତା, ତାହା ନ ପାଇବା ସ୍ଥାନରେ 'ବଞ୍ଚିତ' ବସେ । 'ହତ୍ୟାମୁହଁ' ଭଲ ସ୍ଥାନ ନୁହେଁ, ତେଣୁ 'ରକ୍ଷା ପାଇ' ଠିକ୍ ହେବ ।

୫୩ । ଜଣେ ଗୋରା ସାହେବ ଆଜି ସ୍କୁଲକୁ ଆସିଥିଲେ ।
—ସାହେବମାନେ ସମସ୍ତେ ଗୋରା । ତେଣୁ ଲେଖ କେବଳ 'ଜଣେ ସାହେବ' ବା 'ଜଣେ ଗୋରା ଜାତିର ଲୋକ' ଆସିଥିଲେ ।

୫୪ । ଏହା ତାଙ୍କୁ ବିସ୍ମିତ କରି ତୋଳିଲା ।
—ଏହା ବଙ୍ଗ ଭାଷାର ଶୈଳୀ । ପ୍ରାଚୀନ ଓଡ଼ିଆରେ 'ଉଠାଇବା' ଅର୍ଥରେ 'ତୋଳିବା'ର ପ୍ରୟୋଗ ଅଛି ସତ, କିନ୍ତୁ 'କରି ତୋଳିଲା'—ଏପରି ବ୍ୟବହାର ଓଡ଼ିଆ ଭାଷାରେ ହୁଏ ନାହିଁ ।

୫୫ । ସାହାଯ୍ୟ ନ ମିଳିଲେ ଆମେ ହତୋତ୍ସାହିତ ହେବୁ ।
—ହତ ହୋଇଅଛି ଉତ୍ସାହ ଯାହାର ସେ ହତୋତ୍ସାହ । ଏ ଶବ୍ଦଟି ବିଶେଷଣ । ସେଥିରେ ଇତ ପ୍ରତ୍ୟୟ ଲଗିବା ଅନାବଶ୍ୟକ । ତେଣୁ କେବଳ ହେବ 'ହତୋତ୍ସାହ ହେବୁ' ।

୫୬ । ମୁଁ ନିରାଶରେ ଦିନ କାଟୁଛି ।
—'ନିରାଶ' ଶବ୍ଦଟି ବିଶେଷଣ; ଏହାର ବିଶେଷ୍ୟ ରୂପ 'ନୈରାଶ୍ୟ' । ତେଣୁ ହେବ

'ମୁଁ ନୈରାଶ୍ୟରେ ଦିନ କାଟୁଛି' । ସେ ନିରାଶ ହୋଇ ଫେରିଗଲା—ଏହା 'ନିରାଶ'ର ଶୁଦ୍ଧ ପ୍ରୟୋଗ ।

୫୭ । ପିଲାଟି ତାଙ୍କୁ ବିନୀତ ସହକାରେ ପ୍ରଣାମ କଲା ।
—'ବିନୟ ସହକାରେ' କିମ୍ବା 'ବିନୀତ ଭାବରେ' ପ୍ରଣାମ କଲା—ଠିକ୍ ହେବ ।

୫୮ । ସିଗାରେଟ୍ ନ ଖାଇବାକୁ ମୁଁ ତାଙ୍କୁ ମନା କରିଛି ।
—ଏ ବାକ୍ୟରେ ଦୁଇଟି ନାସ୍ତିବାଚକ ମିଶି ଅସ୍ତିବାଚକ ଅର୍ଥ ହୋଇଯାଉଛି, ଯଦ୍ଦ୍ୱାରା ଓଲଟା ଅର୍ଥ ବୁଝାଉଛି । ଶୁଦ୍ଧ ବାକ୍ୟଟି ହେବ—ମୁଁ ତାଙ୍କୁ ସିଗାରେଟ ଖାଇବାକୁ ମନା କରିଛି ।

୫୯ । ଅଭିଯୁକ୍ତକାରୀ କ୍ଷତିପୂରଣ ପାଇବେ ।
— ଅଭିଯୁକ୍ତକାରୀ ଶବ୍ଦଟି ଭୁଲ୍ । ଏହା ହେବ 'ଅଭିଯୋଗକାରୀ' ।

୬୦ । ଅନ୍ୟାନ୍ୟ ପିଲାମାନେ କଣ କରିଛନ୍ତି କହ ।
— ଅନ୍ୟାନ୍ୟ ପିଲା କିମ୍ବା ଅନ୍ୟ ପିଲାମାନେ କଣ କରିଛନ୍ତି କହ ।

୬୧ । ସେ ସୁନ୍ଦର ସୁନ୍ଦର ଚିତ୍ରଗୁଡ଼ିଏ ମୋତେ ଦେଖାଇଲା ।
— ସେ ସୁନ୍ଦର ଚିତ୍ରଗୁଡ଼ିଏ କିମ୍ବା ସୁନ୍ଦର ସୁନ୍ଦର ଚିତ୍ର ମୋତେ ଦେଖାଇଲା ।

୬୨ । ସେଠାରେ ନାନାଦି ପ୍ରକାର ଖାଦ୍ୟ ରଖାଯାଇଛି ।
— ସେଠାରେ ନାନାପ୍ରକାର ଖାଦ୍ୟ ରଖାଯାଇଛି ।

୬୩ । ଗୋପବାବୁ ଯାତ୍ରା କରିବା ପାଇଁ ବୃଥାରେ ମାତିଛନ୍ତି ।
— ଗୋପବାବୁ ଯାତ୍ରା କରିବା ପାଇଁ ବୃଥା ମାତିଛନ୍ତି । 'ବୃଥା' ଅବ୍ୟୟ ପଦ, ତେଣୁ ରେ ଲଗିଲେ ଭୁଲ୍ ହେବ ।

୬୪ । ଏହାର ଶେଷ ପରିଣାମ ଭଲ ହେବ ନାହିଁ ।
—ଏହାର ପରିଣାମ ଭଲ ହେବ ନାହିଁ ।

୬୫ । ଯେତେ ପାରିପାଏ ବଗିଚାକୁ ସଫା ରଖିବ ।
— ଯେତେ ଦୂର ପାରିବ କିମ୍ବା ଯେତେଦୂର ସମ୍ଭବ, ବଗିଚାକୁ ସଫା ରଖିବ ।

୬୬ । ପ୍ରଳମ୍ବରୁ ତ ଅଶୁଦ୍ଧ ହେଲାଣି, ଏ କାମରେ କାହିଁକି ମାତିଛ ?
— ଶୁଦ୍ଧ ଶବ୍ଦଟି 'ପ୍ରଣବ' ଅର୍ଥାତ୍ ଓଁକାର । ତେଣୁ ହେବ 'ପ୍ରଣବରୁ ଅଶୁଦ୍ଧ' ।



# ଯେଉଁଠି ସନ୍ଦେହ ହୁଏ

## (କ) ଅର୍ଥରେ ସନ୍ଦେହ

ରଚନା ଓ ବ୍ୟାକରଣ ବହିଗୁଡ଼ିକ ଖୋଲେଇଲେ ଅନେକ ସମୋଚ୍ଚାରିତ ଶବ୍ଦଯୁଗ୍ମର ତାଲିକା ଓ ଅର୍ଥ ମିଳିବ । ତେବେ ଛାତ୍ରଛାତ୍ରୀମାନଙ୍କ ଲେଖାରୁ ଯେଉଁ ଅତି ସାଧାରଣ କେତୋଟି ଅଶୁଦ୍ଧି ଆମ ଦୃଷ୍ଟିକୁ ଆସିଛି ଏବଂ ବିଭିନ୍ନ ସମୟରେ 'ସଂସାର' ପତ୍ରିକାରେ ଆଲୋଚିତ ହୋଇଛି, ସେଥିରୁ କେତେ ଯୋଡ଼ା ବାଛି ଏଠାରେ ଦେଉଛୁ ।

କୁଳ ଓ କୂଳ : କୁଳ—ବଂଶ, କୂଳ – ତଟ

୧) ଗୁଣ ନ ଥିଲେ ଉଚ୍ଚ କୁଳର କିଛି ମୂଲ୍ୟ ନାହିଁ ।

୨) ବଢ଼ି ଦେଖିବାକୁ ନଦୀକୂଳରେ ବହୁ ଲୋକ ଜମା ହୋଇଛନ୍ତି ।

କୃତ ଓ କୃତୀ : ପ୍ରଥମଟିର ଅର୍ଥ କାର୍ଯ୍ୟ, ଦ୍ୱିତୀୟଟିର ଅର୍ଥ ଯୋଗ୍ୟ ।

୧) 'ଚିଲିକା' କବିବର ରାଧାନାଥଙ୍କର ଏକ ପ୍ରଧାନ କୃତି ।

୨) ଦେଶର କୃତୀ ସନ୍ତାନମାନଙ୍କୁ ସମ୍ମାନ ଦିଅ ।

ଗୁଣି ଓ ଗୁଣୀ : ଗୁଣି – ତନ୍ତ୍ରବିଦ୍ୟା, ଗୁଣୀ—ଗୁଣବାନ୍

୧) ଗୁଣି ଜାଣିଥିବା ଲୋକକୁ ଗୁଣିଆ କହନ୍ତି ।

୨) ତାଙ୍କର ପିତା ଜଣେ ଗୁଣୀ ବ୍ୟକ୍ତି ।

ଚରିତ ଓ ଚରିତ୍ର : ଚରିତ—ଜୀବନୀ, ଚରିତ୍ର—ସ୍ୱଭାବ

୧) ମହାପୁରୁଷମାନଙ୍କ ଚରିତ ପଢ଼ିବା ଉଚିତ ।

୨) ଚରିତ୍ର ଯାହାର ନିର୍ମଳ, ସେ ସବୁଠି ଆଦର ପାଏ ।

ଜାତ ଓ ଯାତ : ଜାତ – ଉତ୍ପନ୍ନ, ଯାତ – ଯାତ୍ରା

୧) ପଦ୍ମ ପଙ୍କରୁ ଜାତ ବୋଲି ତା ନାଁ ପଙ୍କଜ ।

୧) ସେ ନୂଆ ଲୁଗା ପିନ୍ଧିଲେ ଯାତ୍ରା ଦେଖିବାକୁ ଯିବ ।

ଟିକା ଓ ଟୀକା : ଟିକା – ରୋଗର ପ୍ରତିଷେଧକ ଟିକା; ଟୀକା – ବ୍ୟାଖ୍ୟା
୧) ପିଲାଟିକୁ ଶୀଘ୍ର ବି.ସି.ଜି. ଟିକା ଦିଅ ।
୨) ମୁଁ ସାହିତ୍ୟ ବହିର ଖଣ୍ଡେ ଟୀକା କିଣିଛି ।

ନା ଓ ନାଁ : ହଁ ର ବିପରୀତ ନା; ନାଁ ଅର୍ଥ ନାମ ।
୧) ନା, ମୁଁ ଏ ପର୍ଯ୍ୟନ୍ତ ଖାଇନାହିଁ ।
୨) ତୁମ ନାଁ ମୁଁ ପୂର୍ବରୁ ଜାଣିଥିଲି ।

ପୁରା ଓ ପୂରା : ପୁରା – ପ୍ରାଚୀନ; ପୂରା – ପୂର୍ଣ୍ଣ
୧) ପୁରାକାଳରେ ଅଯୋଧ୍ୟା ଏକ ପ୍ରସିଦ୍ଧ ସ୍ଥାନ ଥିଲା ।
୨) ମୁଁ ପୂରାଦମ୍‌ରେ ଏତିକ ବାଟ ଚାଲିଆସିଲି ।

ପ୍ରସାଦ, ପ୍ରାସାଦ : ପ୍ରସାଦ—ଅନୁଗ୍ରହ, ପ୍ରାସାଦ—ଅଟ୍ଟାଳିକା
୧) ଠାକୁରଙ୍କ ପ୍ରସାଦକୁ ଫୋପାଡ଼ି ଦିଅନାହିଁ ।
୨) ମହାରାଜାଙ୍କ ପ୍ରାସାଦ ସବୁଠାରୁ ମନୋହର ।

ବଳି ଓ ବଳୀ : ବଳି—ପୂଜାପଶୁ, ବଳୀ—ବଳୁଆ
୧) ଦେବୀଙ୍କ ଆଗରେ ଆଉ ପୂର୍ବପରି ବଳି ପଡ଼ୁନାହିଁ ।
୨) ଭୀମଙ୍କ ପରି ବଳୀ ଆଉ କେହି ନ ଥିଲେ ।

ଭୋଜ ଓ ଭୋଜୀ : ଭୋଜ---ଉତ୍ସବାଦିରେ ମିଳୁଥିବା ଆହାର, ଭୋଜୀ---ଯେ ଭୋଜନ କରେ ।
୧) ଆଜି ଆମ ବିଦ୍ୟାଳୟରେ ଗୋଟିଏ ଭୋଜି ହେବ ।
୨) ଗାଈ ଏକ ତୃଣଭୋଜୀ ପ୍ରାଣୀ ।

ନିତି ଓ ନୀତି : ନିତି ଅର୍ଥ ପ୍ରତିଦିନ, ନୀତି---ନିୟମ
୧) ମୁଁ ନିତି ବ୍ୟାୟାମ କରେ ।
୨) ଏ ଗଳ୍ପରୁ କି ନୀତିଶିକ୍ଷା ମିଳୁଛି ?

ମଜା ଓ ମଜ୍ଜା : ମଜା---କୌତୁକ, ଆନନ୍ଦ, ମଜ୍ଜା---ଅସ୍ଥି ମଧ୍ୟସ୍ଥ ସାର ପଦାର୍ଥ
୧) ବିଶେଷ୍ୟ---ପହଁରା ଶିଖିଗଲେ ଭାରି ମଜା ହେବ ।
ବିଶେଷଣ---ସେ ଗୋଟିଏ ମଜା ଗପ କହିଲେ ।
୨) ନିଶା ଖାଇବା ତାର ଅସ୍ଥିମଜ୍ଜାଗତ ହୋଇଗଲାଣି ।

ଲକ୍ଷ ଓ ଲକ୍ଷ୍ୟ : ଲକ୍ଷ---ଶହେ ହଜାର, ଲକ୍ଷ୍ୟ---ଆଦର୍ଶ

୧) ପାଞ୍ଚ ଲକ୍ଷ ଟଙ୍କା ଦେଇ ସେ ଘର ଖଣ୍ଡେ କିଣିଛୁ ।

୨) ତା ଜୀବନର ଲକ୍ଷ୍ୟ ସିନେମାରେ ଅଭିନୟ କରିବା ।

ଶୂର ଓ ସୁର : ଶୂର---ବୀର, ସୁର---ଦେବତା

୧) ଭାରତବର୍ଷ ଥିଲା ଶୂରମାନଙ୍କର ଜନ୍ମଭୂମି ।

୨) ସୁର ଓ ଅସୁରଙ୍କ ମଧ୍ୟରେ ସବୁବେଳେ ବିବାଦ ଲାଗୁଥିଲା ।

## (ଖ) ବନାନରେ ସନ୍ଦେହ

ତଳେ ଦିଆଯାଇଥିବା କେତୋଟି ଅତି ସାଧାରଣ ଶବ୍ଦର ବନାନ ଭିନ୍ନ ଭିନ୍ନ ଭାବରେ ଛପାଯାଉଥିବାରୁ କେଉଁଟି ଠିକ୍ ଜାଣି ନ ପାରି ଅନେକ ଲୋକ ସନ୍ଦେହରେ ପଡ଼ନ୍ତି । ଭଲ ଅଭିଧାନ ସମସ୍ତଙ୍କ ପାଖରେ ନ ଥାଏ । ପ୍ରହରାଜଙ୍କ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ~~ନୀଳମଣି~~ ... ଦାସଙ୍କ ସରଳ ଓଡ଼ିଆ ଅଭିଧାନ ଏବଂ ଶ୍ରୀ କୃଷ୍ଣଚନ୍ଦ୍ର କରଙ୍କ ତରୁଣ ଶବ୍ଦକୋଷ---ଏ ତିନିଗୋଟି ଗ୍ରନ୍ଥକୁ ଦେଖିବା ପରେ ଆମେ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଲୁ , ତାହା ଏଠାରେ ଦେଉଛୁ ।

ଖେଳାଳି, ଖେଳାଳୀ : ଗୁଣ୍ଡାଳି, ଚଢ଼ାଳି, କଣ୍ଟାଳି ପ୍ରଭୃତି ସମଜାତୀୟ ଶବ୍ଦ । ଏହାର ସାଧାରଣ ବନାନ 'ଖେଳାଳି' । କେବଳ ସ୍ତ୍ରୀଲିଙ୍ଗରେ 'ଖେଳାଳୀ' ହୁଏ ।

ଦାବି, ଦାବୀ : ଶୁଦ୍ଧ ଶବ୍ଦଟି 'ଦାବି' ।

ବେଣି, ବେଣୀ : ଦୁଇଟିଯାକ ଏକା ଅର୍ଥରେ ବ୍ୟବହୃତ ହେଉଛି ।

ଭାରି, ଭାରୀ : ଭାରି (କ୍ରି.ବି.)– ବହୁ ପରିମାଣରେ । ମତେ ଭାରି କାଟିଲା କମ୍ବା (ବିଶେଷଣର ବିଶେଷଣ) ତୁ ଭାରି ଗୁଲାଖ୍ ।

ଭାରୀ ( ବିଶେଷଣ )—ଓଜନିଆ । ଭାରୀ ଜିନିଷ ଉଠାଅ ନା ।

ରାଖୀ, ରାକ୍ଷୀ : ଦୁଇଟିଯାକ ଠିକ୍ । ଗହ୍ମା ପୂର୍ଣ୍ଣିମାର ଅନ୍ୟ ନାମ ରାକ୍ଷୀ(ଖୀ) ପୂର୍ଣ୍ଣିମା ।

ସାଥି, ସାଥୀ : ସାଥି (ବିଶେଷ୍ୟ)—ସଙ୍ଗ । ମୋ ସାଥିରେ କିଛି ବାଟ ଚାଲ । ସାଥୀ (ବିଶେଷ୍ୟ) – ସଙ୍ଗୀ । ତୁମ ସାଥୀମାନଙ୍କୁ ଡାକ ।

କେତେକ ଶବ୍ଦରେ ହ୍ରସ୍ୱଇକାର ଓ ଦୀର୍ଘଈକାର ଏବଂ ହ୍ରସ୍ୱଉକାର ଓ ଦୀର୍ଘଊକାର ଲଗି ଲଗି ରହିଥାଏ । ଶ ଷ ସ ମଧ୍ୟରୁ କେଉଁଠି କେଉଁଠି ଦୁଇଟି ପାଖାପାଖି ଥାଏ । ଏଣୁ ବନାନରେ ସନ୍ଦେହ ଆସେ । ଏଥିପାଇଁ ଅତି ପ୍ରଚଳିତ ଏହିପରି କେତୋଟି ଶବ୍ଦର ଶୁଦ୍ଧ ବନାନ ଏଠାରେ ବର୍ଣ୍ଣାନୁକ୍ରମରେ ଦିଆଯାଇଅଛି ।

| | | | | |
|---|---|---|---|---|
| (କ) | କାଳିମା | ଦୀକ୍ଷିତ | ବାଲ୍ମୀକି | ମରୀଚିକା |
| | କୀର୍ତ୍ତି | ଦୀପିକା | ବାହିନୀ | ମୋହିନୀ |
| | କୁମୁଦିନୀ | ଦୁର୍ନୀତି | ବିକିରଣ | ରୀତିମାନ୍ତ |
| | କ୍ଷୀଣ | ନିରୀକ୍ଷଣ | ବିନ୍ଦୀ | ଶିଢ଼ି |
| | ଗୃହିଣୀ | ନିରୀହ | ବିଦୀର୍ଣ୍ଣ | ଶିଥିଳ |
| | ଚିକୁର | ନିଶୀଥ | ବିନୀତ | ଶିବିକା |
| | ଚିକିତ୍ସା | ନୀଳିମା | ବିଭୀଷିକା | ଶିବିର |
| | ଜିଗୀଷା | ପରୀକ୍ଷିତ | ବିଲୀନ | ଶିମିଳି |
| | ଜୀବିକା | ପାଚେରି | ବୀଚି, ବୀଚୀ | ଶିରୀଷ |
| | ଜୀବିତ | ପିଢ଼ିଆ | ବୀଥି, ବୀଥୀ | ଶ୍ରମଜୀବୀ |
| | ତିତିକ୍ଷା | ପୀଡ଼ିତ | ବ୍ରୀହି | ସମୀଚୀନ |
| | ତିମିର | ପ୍ରତୀଚୀ | ଭୀତି | ସମ୍ମିଳିତ |
| | ଦଧୀଚି | ପ୍ରୀତି | ମନୀଷୀ | ସୀମିତ |
| (ଖ) | ଅନୁକୂଳ | ଧୂସର | ବୁଭୁକ୍ଷା | ମୁମୂର୍ଷୁ |
| | ଉରୁ | ଦୁରୂହ | ଭ୍ରୂକୁଟୀ (ଟି) | ମୁହୁର୍ମୁହୁଃ |
| | କୁମୁଦ | ନୂପୁର | ମଧୁସୂଦନ | ମୁହୂର୍ତ୍ତ |
| | କୁରୂପ | ପୁରୁଣା | ମୁମୁକ୍ଷା | ଶୁଶ୍ରୂଷା |
| (ଗ) | ଶଶକ | ଶୀର୍ଷ | ସଂଶୋଧନ | ସୁଷମା |
| | ଶଶାଙ୍କ | ଶୋଷ | ସଂସଦ | ସୁଷୁପ୍ତ |
| | ଶାଶ୍ୱତ | ଶ୍ମଶ୍ରୁ | ସୀସା | ସୁଶ୍ରୁତ |
| | ଶାସନ | ଶ୍ଳେଷ୍ମା | ସୁଶୀଳ | ସୁଶ୍ରାବ୍ୟ |



# ପିଲାଙ୍କ ପ୍ରଶ୍ନ : ଆମ ଉତ୍ତର

**ପ୍ରଶ୍ନ** (୧)—ଦରଖାସ୍ତ ଲେଖିବାବେଳେ ଯେଉଁ 'ମହାଶୟ', 'ମହୋଦୟ' ଏବଂ 'ମହାଭାଗ' ସମ୍ବୋଧନ କରାଯାଏ, ତାର ଅର୍ଥ କଣ ?

**ଉତ୍ତର**—ହଁ, ଏହା ନିଶ୍ଚୟ ସମସ୍ତଙ୍କର ଜାଣିବା ଦରକାର । ତୁମେ ଜଳାଶୟ, ଆମାଶୟ ଓ ମୂତ୍ରାଶୟ ଶବ୍ଦଗୁଡ଼ିକର ଅର୍ଥ ଜାଣିଥିବ । ଆଶୟ ଅର୍ଥ ଆଧାର, ତେଣୁ ଜଳ ଯେଉଁଠି ଥାଏ ତାକୁ ଜଳାଶୟ କହନ୍ତି । ଆମାଶୟ ଓ ମୂତ୍ରାଶୟର ଅର୍ଥ ମଧ୍ୟ ସେହିପରି । 'ମହା' ଓ 'ଆଶୟ' ମିଶି ମହାଶୟ ହୋଇଛି । ମହା ଅର୍ଥାତ୍ ମହତ୍ ଗୁଣ ଯେଉଁଠି ବା ଯାହାଠାରେ ଥାଏ, ତାଙ୍କୁ ମହାଶୟ କୁହାଯାଏ । ମହା + ଉଦୟ = ମହୋଦୟ, ଅର୍ଥାତ୍ ଅତି ଉନ୍ନତ । ସେହିପରି ମହତ୍ ଭାଗ ବା ଭାଗ୍ୟ ଅର୍ଥରେ 'ମହାଭାଗ' ବ୍ୟବହୃତ ହୁଏ ।

**ମନେରଖ**—ମହାନ୍ ବା ମହତ୍ ଶବ୍ଦ ପୂର୍ବରେ ଥିଲେ ତାହା ମହା ହୋଇଯାଏ । ଏହିପରି ବହୁ ଶବ୍ଦ ତୁମେ ଜାଣ, ଯଥା—ମହାତ୍ମା, ମହାକାଶ, ମହାମାନବ, ମହାବଳ, ମହାଭାରତ ଇତ୍ୟାଦି । ଏ ସବୁଥିରେ ବଡ଼ ବା ଶ୍ରେଷ୍ଠ ଅର୍ଥରେ ମହା ବସୁଛି । କିନ୍ତୁ ଆଉ କେତେକ ସ୍ଥଳରେ ଶବ୍ଦ ପୂର୍ବରୁ 'ମହା' ଲାଗିଲେ ଖରାପ ଅର୍ଥ ବୁଝାଏ । ତାହା ମଧ୍ୟ ତୁମର ଜାଣିବା ଉଚିତ । ଏ ସମ୍ପର୍କରେ ଯେଉଁ ସଂସ୍କୃତ ଶ୍ଳୋକଟି ଅଛି, ତାହା ମନେ ରଖିଲେ ଭଲ ହେବ ।

ଶଙ୍ଖେ ତୈଳେ ତଥା ମାଂସେ ବୈଦ୍ୟେ ଜ୍ୟୋତିଷିକେ ଦ୍ୱିଜେ
ଯାତ୍ରାୟାଂ ପଥି ନିଦ୍ରାୟାଂ ମହତ୍ ଶବ୍ଦ ନ ଦୀୟତେ ।।

ଶଙ୍ଖ, ତୈଳ, ମାଂସ, ବୈଦ୍ୟ, ଜ୍ୟୋତିଷିକ, ଦ୍ୱିଜ, ଯାତ୍ରା, ପଥ ଓ ନିଦ୍ରା—ଏ ସବୁ ଶବ୍ଦ ପୂର୍ବରୁ ମହା ଲାଗିଲେ ଖରାପ ଅର୍ଥ ବୁଝାଏ; ଯଥା— ମହାଶଙ୍ଖ—ମଣିଷ ମୁଣ୍ଡର ଖପୁରି ହାଡ଼; ମହାତୈଳ ମଣିଷ ଦେହର ଚର୍ବି; ମହାମାଂସ—ନରମାଂସ ବା ଗୋମାଂସ; ମହାବୈଦ୍ୟ—ଅନାଡ଼ି ଚିକିତ୍ସକ; ମହାଜ୍ୟୋତିଷ—ଅନଭିଜ୍ଞ ଜ୍ୟୋତିଷୀ; ମହାଦ୍ୱିଜ—ନିକୃଷ୍ଟ ବ୍ରାହ୍ମଣ; ମହାଯାତ୍ରା, ମହାପଥ—ମୃତ୍ୟୁ ବା ଯମପୁରକୁ ଯାତ୍ରା ଏବଂ ମୃତ୍ୟୁର ପଥ ।

**ପ୍ରଶ୍ନ** (୨)—ଓଡ଼ିଆରେ ଲେଖିବାବେଳେ ଇଂରାଜୀ ଶବ୍ଦ ବ୍ୟବହାର କରାଯିବ କି ନା, ଏହାର ସପକ୍ଷରେ ଓ ବିପକ୍ଷରେ ନାନା ମତ ଶୁଣିବାକୁ ମିଳୁଛି । ଆପଣଙ୍କ ମତାମତ କଣ ?

**ଉତ୍ତର**—ଇଂରେଜ ସରକାର ଏ ଦେଶରୁ ଅପସରିଗଲେ; ମାତ୍ର ଇଂରାଜୀ ଭାଷାକୁ ଆମେ ଛାଡ଼ି ପାରୁନାହୁଁ କି ଛାଡ଼ିପାରିବୁ ନାହିଁ । ଧୋତି ଷ୍ଟ୍ରବରଠାରୁ ପ୍ୟାଣ୍ଟ୍ ସାର୍ଟ ଅଧିକ ସୁବିଧାଜନକ ବୋଲି ଯଦି ତାକୁ ଗ୍ରହଣ କରିନେବାରେ ଆମର ଆପତ୍ତି ନ ହେଲା, ତେବେ ପୃଥିବୀର ଉନ୍ନତତମ ଭାଷାରୁ କେତେକ ଶବ୍ଦ ନେଇ ଆମ ଭାଷାର ଶବ୍ଦସଂପଦ ବୃଦ୍ଧି କଲେ କ୍ଷତି କଣ ? ବର୍ତ୍ତମାନ ଆମେ ଏକ ସନ୍ଧିକ୍ଷଣରେ ପହଞ୍ଚିଛୁ । ଆଞ୍ଚଳିକ ଭାଷାର ଉନ୍ନତି ପାଇଁ ଜାତୀୟ ଓ ରାଜ୍ୟସ୍ତରରେ ଚେଷ୍ଟା ଚାଲିଛି । ସେଥିପାଇଁ କେତେକେ ଯୁକ୍ତି କରୁଛନ୍ତି—ଏତେବେଳେ ପରଭାଷା ତଥାପି କରି ଇଂରାଜୀକୁ ପୂରାପୂରି ବହିଷ୍କାର କରା ନ ଯିବ କାହିଁକି ? ଆଉ କେତେକେ ଏହାର ବିରୋଧ କରି କହୁଛନ୍ତି, 'ଇଂରାଜୀକୁ ଛାଡ଼ିବା ଅସମ୍ଭବ' ।

ବର୍ତ୍ତମାନ ଯେଉଁସବୁ ଇଂରାଜୀ ଶବ୍ଦ ଆମ ଭାଷାରେ ବ୍ୟବହୃତ ହେଉଛି, ସେଗୁଡ଼ିକୁ ମୋଟାମୋଟି ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

(୧) ପ୍ରଥମ ଶ୍ରେଣୀରେ ଆମେ ସେହିଗୁଡ଼ିକୁ ନେବା, ଯେଉଁ ଶବ୍ଦର ଓଡ଼ିଆ ପରିଭାଷା ନାହିଁ, ବା ଯଦି ଅଛି ତାହା ଅଧିକ ଦୁର୍ବୋଧ, ଯଥା—ବେଞ୍ଚ୍, ବ୍ରେକ୍ (brake), ରେଲ୍‌ଷ୍ଟେସନ୍, ପେନ୍‌ସିଲ୍, ମଟର, ବସ୍, ଟ୍ରକ୍, ପାର୍ଶଲ, ନୋଟ୍, ଭୋଟ୍, ପ୍ଲାଷ୍ଟିକ୍, ଇଂଜେକସନ୍, ଇଂଜିନ୍, ଷ୍କୁଟର୍, ପାଶ୍, ଫେଲ୍, ପୁଲିସ୍, ସାଇକେଲ୍, ଭ୍ୟାନ୍, ଟର୍ଚ୍ଚ, ଲାଇସେନ୍‌ସ, ଡିଗ୍ରୀ (ତାପମାନ) ପ୍ରଭୃତି । ଏ ଶବ୍ଦଗୁଡ଼ିକ ଏତେ ସୁପ୍ରଚଳିତ ଯେ ଇଂରାଜୀ ନ ଜାଣିଥିବା ଲୋକ ମଧ୍ୟ ତାର ଅର୍ଥ ବୁଝିପାରିବ । ଇଂରାଜୀ ଭାଷା ଏତେ ସମୃଦ୍ଧ ହୋଇଥିଲେ ସୁଦ୍ଧା jungle, shikari, jute (ଝୋଟ) ପ୍ରଭୃତି କେତେକ ଭାରତୀୟ ଭାଷାର ଶବ୍ଦକୁ ଗ୍ରହଣ କରିନେଇଛି । ତେଣୁ ଆମେ ଉପରିଲିଖିତ ଶବ୍ଦଗୁଡ଼ିକୁ ଗ୍ରହଣ କରିନେବାରେ ଆପତ୍ତି ଉଠିବା ଉଚିତ ନୁହେଁ ।

(୨) ଦ୍ୱିତୀୟ ଶ୍ରେଣୀରେ ଆମେ ଯେଉଁ ଶବ୍ଦଗୁଡ଼ିକୁ ନେଉଛୁ, ସେଗୁଡ଼ିକ ମୂଳତଃ ଇଂରାଜୀ ହେଲେହେଁ, ସେ ସବୁର ସହଜବୋଧ ଓଡ଼ିଆ ପ୍ରତିଶବ୍ଦ ମଧ୍ୟ ଅଛି, ଯଥା—ସ୍କୁଲ (ବିଦ୍ୟାଳୟ), କ୍ଲାସ୍ (ଶ୍ରେଣୀ), ପୋଷ୍ଟ ଅଫିସ୍ (ଡାକଘର), ସିନେମା

(ଟେଲିଗ୍ରାଫ), ପ୍ରେସ୍ (ଛାପାଖାନା), ମ୍ୟାପ୍ (ମାନଚିତ୍ର), ମିଟିଙ୍ଗ୍ (ସଭା), ମେସିନ୍ (କଳ), ପ୍ରାଇଜ୍ (ପୁରସ୍କାର) ଇତ୍ୟାଦି । ଏଭଳି କ୍ଷେତ୍ରରେ ଇଂରାଜୀ ବା ଓଡ଼ିଆ ଯେ କୌଣସିଟିକୁ ବ୍ୟବହାର କଲେ କୌଣସି ଅସୁବିଧା ହେବ ନାହିଁ । ତେବେ ଓଡ଼ିଆକୁ ଅଗ୍ରାଧିକାର ଦେବା ଉଚିତ ।

(୩) ଏହି ଶ୍ରେଣୀର ଆଉ କେତେକ ଓଡ଼ିଆ ପ୍ରତିଶବ୍ଦ ଏବେ ସୁପ୍ରଚଳିତ ହୋଇ-ନାହିଁ, ଯଥା—ଇଞ୍ଜିନିୟର (ଯନ୍ତ୍ରୀ), ଫଟୋ (ଆଲୋକଚିତ୍ର), ଟେଲିଫୋନ୍ (ଦୂରଭାଷ), କର୍ପୋରେସନ୍ (ନିଗମ), ଅପରେସନ୍ (ଅସ୍ତ୍ରଚିକିତ୍ସା ବା ଶଲ୍ୟ-ଚିକିତ୍ସା), ଅଫିସର୍ (ଅଧିକାରୀ) ଇତ୍ୟାଦି । ଏ କ୍ଷେତ୍ରରେ ଇଂରାଜୀକୁ ପୂରାପୂରି ପରିହାର ନ କରି ଓଡ଼ିଆ ପ୍ରତିଶବ୍ଦକୁ କ୍ରମେ କ୍ରମେ ସହଜବୋଧ୍ୟ ସ୍ତରକୁ ନେବାପାଇଁ ଚେଷ୍ଟା ଚଳାଇବା ଉଚିତ । ତାହାହେଲେ ଅଶିକ୍ଷିତ ଲୋକମାନେ ମଧ୍ୟ କିଛିଦିନପରେ ତାହାର ଅର୍ଥ ବୁଝିପାରିବେ ।

**ପ୍ରଶ୍ନ** (୩)—ଡ ଅକ୍ଷର ତଳେ ବିନ୍ଦୁ ନ ଦେଲେ କଣ ଭୁଲ୍ ହୋଇଯିବ ?

**ଉତ୍ତର**—ସବୁ ଡ ତଳେ ବିନ୍ଦୁ ଦିଆଯାଏ ନାହିଁ । ଯେଉଁଠି ବିନ୍ଦୁ ଦିଆଯିବା କଥା, ସେଠି ନ ଦେଲେ ନିଶ୍ଚୟ ଭୁଲ୍ ହେବ । ସେ ନିୟମଟି ଏଇଆ । ଯେଉଁଠି ଡ ର ଉଚ୍ଚାରଣ ଦୃଢ଼ ବା ଗମ୍ଭୀର, ସେଠାରେ ବିନ୍ଦୁ ଦେବା ଆବଶ୍ୟକ ନାହିଁ । ଶବ୍ଦ ମୂଳରେ ଥିବା ଡ କୁ ଆମେ ଦୃଢ଼ ଭାବରେ ଉଚ୍ଚାରଣ କରୁ, ଯଥା—ଡଙ୍ଗା, ଡାଳ, ଡମ୍ବ, ଡାହୁକ, ଡେଣା, ଡରକୁଳା ଇତ୍ୟାଦି । କିନ୍ତୁ ଯେଉଁ ଡ଼ ଶବ୍ଦ ଭିତରେ ବା ଶେଷରେ ଥାଏ, ସେଠାରେ ଡ଼ ର ଉଚ୍ଚାରଣ ଅପେକ୍ଷାକୃତ କ୍ଷୀଣ ବା ହାଲୁକା; ସେଠାରେ ଡ ନ ଲେଖି ଡ଼ ଲେଖ; ଯଥା—ଓଡ଼ିଶା, ପାହାଡ଼, ନଡ଼ିଆ, କଉଡ଼ି, ମଡ଼କ, ଦୌଡ଼ିବା ଇତ୍ୟାଦି ।

ମନେରଖିବାକୁ ହେବ ଯେ ଡ ଅକ୍ଷର ପ୍ରତି ଯେଉଁ ନିୟମ ପ୍ରଯୋଜ୍ୟ, ଢ ପ୍ରତି ମଧ୍ୟ ସେହି ନିୟମ ଲାଗୁ ହେବ; ଯେପରି ଢିପ, ଢୋଲ, ଢଗ କିନ୍ତୁ ବଢ଼ି, ସଢ଼େଇ, କଢ଼ ।

କିନ୍ତୁ ଇଂରାଜୀ ଶବ୍ଦକୁ ଓଡ଼ିଆ ଅକ୍ଷରରେ ଲେଖିବାବେଳେ ଶବ୍ଦର ଯେଉଁଠି ଡ ଥାଉ, ସବୁଠାରେ ଡ ଲେଖିବାକୁ ହେବ, ଯଥା—ରେଡିଓ, ଗୁଡ୍ଇଅର୍, ମଡେଲ୍ ।

**ପ୍ରଶ୍ନ** (୪)—କେହି କେହି ଲେଖନ୍ତି 'ସଦାସର୍ବଦା ଓ 'ସଦାବେଳେ' । ଏହା ଠିକ୍ କି ?

**ଉତ୍ତର**—ଏପରି ଏକାର୍ଥବୋଧକ ଯୁଗ୍ମ ଶବ୍ଦର ବ୍ୟବହାର ଲିଖିତ ଓ କଥିତ ଭାଷା ଉଭୟରେ ଦେଖାଯାଏ । ଯଥା—ବଣଜଙ୍ଗଲ, ଝଡ଼ବତାସ, ବନ୍ଧୁବାନ୍ଧବ, ଜନମାନବ, ରୋଗବ୍ୟାଧି, ସାଙ୍ଗସାଥୀ, ଦୋଷତ୍ରୁଟି, ପିଲାଛୁଆ, ବାଗବଗିଚ୍ଛ, ଧାଁଦଉଡ଼ ପ୍ରଭୃତି । କଥାରେ ଜୋର୍ ଦେବାପାଇଁ ବକ୍ତା ଏପରି ପ୍ରୟୋଗର ଆଶ୍ରୟ ନେଇଥାନ୍ତି । ଏହା ବ୍ୟବହାରସିଦ୍ଧ । କିନ୍ତୁ 'ସଦାବେଳେ' ସମ୍ପୂର୍ଣ୍ଣ ଅଶୁଦ୍ଧ । ଏହା ସେ ଶ୍ରେଣୀର ଯୁଗ୍ମଶବ୍ଦ ନୁହେଁ ।

ବେଳେ ବେଳେ ଭିନ୍ନାର୍ଥବୋଧକ ଦୁଇଟି ଶବ୍ଦକୁ ମଧ୍ୟ ଯୋଡ଼ଦେଇ ଯୁଗ୍ମଶବ୍ଦ ଗଠନ କରାଯାଏ, ଯଥା—ବହିପତ୍ର, ପନିପରିବା, ଛୁଞ୍ଚିମାଛି, ଦାନାକନା, ନଣ୍ଟନାଳ, ଜମିବାଡ଼ି, ଟଙ୍କାପଇସା, ନିମନ୍ତ୍ରପତ୍ର, କଥାବାର୍ତ୍ତା ଇତ୍ୟାଦି । ଏଭଳି ଯୁଗ୍ମ ଶବ୍ଦର ଅର୍ଥ ବ୍ୟାପକ; କୌଣସି ଗୋଟିଏ ଶବ୍ଦରେ ସୀମିତ ନୁହେଁ । ହେଲେହେଁ ଏହା ଶୁଦ୍ଧ ଭାଷାରୂପେ ସ୍ୱୀକୃତ ।

**ପ୍ରଶ୍ନ** (୫)—'ସଂସାର' ପତ୍ରିକାରେ ଶୁଦ୍ଧ ଭାଷା ଉପରେ ସର୍ବଦା ଗୁରୁତ୍ୱ ଦିଆଯାଉଥିବାସ୍ଥଳେ କେତେକ ସଂଖ୍ୟାରେ ପୂର୍ଣ୍ଣ କୁ ପୂର୍ଣ, କାର୍ଯ୍ୟକୁ କାର୍ଯ, ଏପରି ଭୁଲ୍ ବନାନ ଦିଆଯାଉଛି କିପରି ?

**ଉତ୍ତର**—ତୁମେ ଯାହାକୁ ଭୁଲ୍ ବୋଲି ବିଚାରୁଛ, ତାହା ସମ୍ପୂର୍ଣ୍ଣ ଶୁଦ୍ଧ । ବ୍ୟାକରଣର ନିୟମ ଅନୁସାରେ ରେଫଯୁକ୍ତ ଅକ୍ଷରଗୁଡ଼ିକୁ ଦୁଇପ୍ରକାର ଲେଖାଯାଇପାରେ—କର୍ମ ଓ କର୍ମ୍ମ, ଗର୍ତ ଓ ଗର୍ତ୍ତ, ନିର୍ଲଜ ଓ ନିର୍ଲଜ୍ଜ, ଗର୍ଜନ ଓ ଗର୍ଜ୍ଜନ, ଗର୍ବ ଓ ଗର୍ବ୍ବ, ସୂର୍ଯ ଓ ସୂର୍ଯ୍ୟ, ବର୍ଣ ଓ ବର୍ଣ୍ଣ ଇତ୍ୟାଦି । ଆଗେ ପ୍ରାୟ ସବୁଗୁଡ଼ିକୁ ଦ୍ୱିତ୍ୱ ଦେଇ ଲେଖାଯାଉଥିଲା । ମାତ୍ର ଏବେ ମୁଦ୍ରଣକଳାର ସଂସ୍କାର ଆଣିବା ଏବଂ ଛାପାକାମକୁ ସରଳ କରିବା ଉଦ୍ଦେଶ୍ୟରେ ରେଫଯୁକ୍ତ ଅକ୍ଷରକୁ ଆଉ ଦୋହରି କରି ନ ଯାଇ ଗୋଟିକିଆ ଲେଖାଯାଉଛି । ହିନ୍ଦୀ ଓ ବଙ୍ଗଳାରେ ଏ ରୀତି ବହୁଦିନୁ ଅନୁସୃତ ହେଲାଣି । ମାତ୍ର ଆମ ଓଡ଼ିଆରେ ଏହାକୁ ଅଧାପନ୍ତରିଆ ଭାବରେ ଗ୍ରହଣ କରାଯାଇଛି । ଏବେ ସମସ୍ତେ ପ୍ରାୟ କର୍ମ୍ମ ଓ ଧର୍ମ୍ମ ନ ଲେଖି କର୍ମ ଓ ଧର୍ମ ଏବଂ ଗର୍ବ୍ବ ନ ଲେଖି ଗର୍ବ ଲେଖୁଛନ୍ତି, ମାତ୍ର ଅନ୍ୟ ଅକ୍ଷରଗୁଡ଼ିକ ସେହି ପୂର୍ବ ରୀତିରେ ରହିଛି । ତୁମେ ଜାଣିରଖ ଯେ ପୂର୍ଣ ଓ ପୂର୍ଣ୍ଣ, କାର୍ଯ ଓ କାର୍ଯ୍ୟ—ଉଭୟ ପ୍ରକାର ଲେଖା ଶୁଦ୍ଧ ।

**ପ୍ରଶ୍ନ** (୬)— ଏବେ ଅନେକେ ଯୁକ୍ତାକ୍ଷରଗୁଡ଼ିକୁ ଅନୁସ୍ୱାର ଏବଂ ହଲନ୍ତ ସାହାଯ୍ୟରେ ଲେଖୁଛନ୍ତି । ଓଡ଼ିଆ ଟାଇପ୍‌ରେ ମଧ୍ୟ ଏ ରୀତି ଚାଲିଛି । ଏହା ଠିକ୍ କି ?

**ଉତ୍ତର**—ଠିକ୍ ତ ନିଶ୍ଚୟ, କିନ୍ତୁ ସବୁଠାରେ ଏ ରୀତିରେ ଲେଖି ଯୁକ୍ତାକ୍ଷରକୁ ପୂରାପୂରି ବାଦ୍ ଦେବା ସମ୍ଭବ ନୁହେଁ । ପଣ୍ଡିତ ନୀଳକଣ୍ଠ ଦାସ, ଯାହାଙ୍କୁ ସମସ୍ତେ ଅତି ବିଦ୍ୱାନ୍ ବୋଲି ସ୍ୱୀକାର କରନ୍ତି; ତାଙ୍କ ନିଜ ନାମକୁ 'ନୀଳକଂଠ' ବୋଲି ଲେଖୁଥିଲେ । ଅନୁସ୍ୱାର ଏବଂ ହଲନ୍ତ୍‌ର ବ୍ୟବହାର ଯେଉଁଠାରେ ନିତାନ୍ତ ଆବଶ୍ୟକ, ସେଠାରେ ଚଳୁ । ଓଡ଼ିଆ ଟାଇପ୍ ଯନ୍ତ୍ରର 'କି ବୋର୍ଡ଼' (Key board)ରେ ସବୁ ଯୁକ୍ତାକ୍ଷରକୁ ସ୍ଥାନ ଦେବା ସମ୍ଭବ ନୁହେଁ, କାରଣ ତାର ଆୟତନ ସୀମିତ । ତେଣୁ ସେଠାରେ ନୂଆ ରୀତିର ପ୍ରଚଳନ ଅବଶ୍ୟମ୍ଭାବୀ । ମାତ୍ର ହାତଲେଖାରେ ଓ ଛପାରେ ଯେଉଁ ଅସୁବିଧା ଦେଖାଦେବ, ତାର ସଂକ୍ଷିପ୍ତ ସୂଚନା ଦେଉଛୁ ।

ଆମେ 'ଭୁରଙ୍ଗ'କୁ ଭୁରଙ୍‌ଗ ଲେଖିପାରୁ, କିନ୍ତୁ ସ୍କୁଲକୁ 'ସ୍‌କୁଲ୍' ଲେଖିଲେ ସୁପାଠ୍ୟ ହେବ କି ? ଷ୍ଟେସନ୍, ସ୍ତବ, ସ୍କୁଟର ପରି ଶବ୍ଦରୁ ଯୁକ୍ତାକ୍ଷର ଉଠାଇ ହଲନ୍ତ୍ ସାହାଯ୍ୟରେ ଲେଖିବା ସମ୍ଭବ ନୁହେଁ ।

ଆଉ ଗୋଟିଏ ଅସୁବିଧା ମଧ୍ୟ ଅଛି । 'ପଙ୍କ' ଲେଖିବାରେ ଯାହା ସମୟ ଯାଉଛି, ପଂକ ଲେଖିବାରେ ତାଠାରୁ ଅଧିକ ସମୟ ଯିବ, କାରଣ ହାତକୁ ତିନଥର ଉଠାଇବାକୁ ପଡ଼ିବ । ପ୍ରେସ୍‌ର କଂପୋଜିଟର୍‌ମାନେ ସେହିପରି ଦୁଇ ଥରରେ 'ପଙ୍କ' ଶବ୍ଦଟିକୁ ଯୋଡ଼ନ୍ତି, ମାତ୍ର ଅନୁସ୍ୱାର ଯୋଗେ ଯୋଡ଼ିଲେ ତିନଥର ଲାଗେ—ଥରେ ପ, ଥରେ ଅନୁସ୍ୱାର ଓ ଥରେ କ । ତାପରେ 'ଅସ୍ତ' ଶବ୍ଦଟି ଯେତେ ଜାଗା ନିଏ, 'ଅସ୍‌ତ' ତା ଅପେକ୍ଷା ଅଧିକ ଜାଗା ନେବ । ଛପାରେ ଯଦି ଏହି ପରିବର୍ତ୍ତନକୁ ବ୍ୟାପକ କରାଯାଏ, ତେବେ ୫୦ ପୃଷ୍ଠାର ପାଠ ପାଇଁ ୫୧ ପୃଷ୍ଠା ଆବଶ୍ୟକ ହେବ ।

**ପ୍ରଶ୍ନ** (୭) – ଓଡ଼ିଆରେ ପଢ଼ିବାପାଇଁ ଓ ଲେଖାଲେଖି କରିବାପାଇଁ ସଂସ୍କୃତ ଜ୍ଞାନର କି ଆବଶ୍ୟକତା ଅଛି ?

**ଉତ୍ତର** –ଯେଉଁମାନେ ଅଶିକ୍ଷିତ ପଲ୍ଲୀବାସୀ, ସେମାନେ ସଂସ୍କୃତ ଭାଷା ଜାଣନ୍ତି ନାହିଁ । ଯଦି ବା ସେମାନେ ଲେଖାଲେଖି କରନ୍ତି ନାହିଁ, ଓଡ଼ିଆରେ କଥାବାର୍ତ୍ତା କରନ୍ତି । ପାଠୁଆ ଲୋକମାନଙ୍କ ଭିତରେ ଅନେକେ ଭଲ ସଂସ୍କୃତ ନ ଜାଣି ମଧ୍ୟ

ଲେଖାଲେଖି କରିପାରୁଛନ୍ତି । କିନ୍ତୁ ଏଥିରୁ ବୁଝିବାକୁ ହେବ ନାହିଁ ଯେ ଓଡ଼ିଆ ଭାଷା ଶିଖିବା ପାଇଁ ସଂସ୍କୃତ ଜ୍ଞାନର କୌଣସି ଆବଶ୍ୟକତା ନାହିଁ ।

ସଂସ୍କୃତ ଏକ ମୃତ ଭାଷା ହେଲେହେଁ ଓଡ଼ିଆ ଭାଷା ସଙ୍ଗେ ଏହାର ଘନିଷ୍ଠ ସମ୍ପର୍କ ରହିଛି । ତତ୍ସମ ଓ ତଦ୍ଭବ ଶବ୍ଦଗୁଡ଼ିକୁ ପରୀକ୍ଷା କଲେ ଦେଖାଯିବ, ସେଗୁଡ଼ିକ ଆମର ନିତିଦିନିଆ ବ୍ୟବହାରରେ ଲାଗେ । ସଂସ୍କୃତରୁ ସେଗୁଡ଼ିକ ଆସିଥିବାରୁ ତାର ବନାନ ଓ ବ୍ୟବହାର ଶୁଦ୍ଧ ହେବା ଉଚିତ । ସଂସ୍କୃତ ଜ୍ଞାନ ସେ ଦିଗରେ ସାହାଯ୍ୟ କରେ । ଏ ବହିର 'ସାଧାରଣ ଅଶୁଦ୍ଧି' ଅଧ୍ୟାୟରେ ଯେଉଁ ଶବ୍ଦଗୁଡ଼ିକ ଦିଆଯାଇଛି, ସେଗୁଡ଼ିକ ପାଠୁଆ ଲୋକମାନଙ୍କ ଲେଖାରୁ ନିଆଯାଇଛି । ଆଜିକାଲି ସଂସ୍କୃତ ଶିକ୍ଷା ଉପରେ ପୂର୍ବପରି ଗୁରୁତ୍ୱ ଦିଆଯାଉ ନ ଥିବାରୁ ଏପରି ଭୁଲ୍‌ମାନ ବାହାରୁଛି ।

ଏହାଛଡ଼ା ଓଡ଼ିଆରେ କେତେଗୁଡ଼ିଏ ସଂସ୍କୃତ-ଓଡ଼ିଆ ମିଶା ଶବ୍ଦ ଏବେ ବି ପ୍ରଚଳିତ, ଯଥା—ତଦ୍ଦ୍ୱାରା, ଏତଦ୍ଦ୍ୱାରା, ଏତାଦୃଶ, ଇତସ୍ତତଃ, ତଦାମିନ୍ତନ, ଇଦାମିନ୍ତନ, ତତ୍‌କ୍ଷଣାତ୍, ଯତ୍‌କିଞ୍ଚିତ୍, ଯଦ୍ୟପି, ଯତ୍‌ସାମାନ୍ୟ, ଯତ୍ପରୋନାସ୍ତି, କିଂକର୍ତ୍ତବ୍ୟବିମୂଢ଼ ପ୍ରଭୃତି । ସଂସ୍କୃତ ଜ୍ଞାନ ଏଗୁଡ଼ିକର ଗଠନ ବୁଝିବାରେ ସାହାଯ୍ୟ କରେ । ତତ୍+ରୂପ=ତଦ୍ରୂପ, ଦୁଃ+ଅବସ୍ଥା= ଦୁରବସ୍ଥା । ଏହି ସନ୍ଧିନିୟମ ଜାଣିଗଲେ ଆଉ ବନାନ ଭୁଲ୍ ହେବ ନାହିଁ ।

ଏସବୁ ବ୍ୟତୀତ ପୁରୁଣା ଓଡ଼ିଆ କାବ୍ୟ ଓ କବିତା ବୁଝିବାପାଇଁ କିଛି ସଂସ୍କୃତ ଜ୍ଞାନ ନିଶ୍ଚୟ ଆବଶ୍ୟକ । ଭଞ୍ଜଙ୍କ ସାହିତ୍ୟ ପର୍ଯ୍ୟନ୍ତ ନ ଯାଇ କେବଳ କବିସୂର୍ଯ୍ୟ, ରାଧାନାଥ ଓ ମଧୁସୂଦନଙ୍କ ଯୁଗର ସାହିତ୍ୟ ପଢ଼, ଦେଖିବ ସେଥିରେ ସାଧୁଶବ୍ଦ ପୂରି ରହିଛି । ଚମ୍ପୂରେ କୃଷ୍ଣଙ୍କୁ କୁହାଯାଇଛି 'ଶମନସ୍ୱସାତଟଅଟବୀ-ବୁଲା', ଅର୍ଥାତ୍ ଶମନସ୍ୱସା ଯମୁନା (ଯମଙ୍କ ଭଉଣୀ) ତଟ – ବଣ (ଅଟବୀ)ରେ ଯେ ବୁଲନ୍ତି; ରାଧାନାଥ ଚିଲିକାକୁ କହିଛନ୍ତି 'ଉତ୍କଳ-କମଳା-ବିଳାସ-ଦୀର୍ଘିକା' ଅର୍ଥାତ୍ ଉତ୍କଳ ଲକ୍ଷ୍ମୀଙ୍କର ବିଳାସ ସରୋବର । ପ୍ରାଚୀନ ସାହିତ୍ୟକୁ ନ ଜାଣିଲେ ନୂତନ ସାହିତ୍ୟ ସୃଷ୍ଟି କରିବା କିପରି ?

**ପ୍ରଶ୍ନ** (୮)—ଅଶିକ୍ଷିତ ଗାଉଁଲି ଲୋକଙ୍କ ଭାଷା, ଯଥା—ସଇଳ (ସରଳ), ଶତପଣ୍ଡି (ଶତପର୍ଣ୍ଣୀ), ସୋଇଁ (ସ୍ୱାଇଁ), ନୁଣ (ଲୁଣ), ଝିଅ (ଝିଅ), ଇସ୍କୁଲ ପ୍ରଭୃତିକୁ ସାହିତ୍ୟରେ ସ୍ଥାନ ଦିଆଯିବ କି ?

**ଉତ୍ତର**—ନା । ପ୍ରଥମତଃ, ଲିଖିତ ସାହିତ୍ୟର ଭାଷା କଥିତ ଭାଷାଠାରୁ ପୃଥକ୍ । ଏହା ଶୁଦ୍ଧ ଏବଂ ମାର୍ଜିତ । ସାହିତ୍ୟିକମାନେ ଯେଉଁ ଭାଷା ବ୍ୟବହାର କରିବେ, ସେଥିରୁ ଅନ୍ୟମାନେ ଭାଷା ଶିକ୍ଷା କରିବେ । ଏଭଳି ଲୋକମାନେ ପ୍ରାୟ ସମସ୍ତେ ଶିକ୍ଷିତ ହୋଇଥାନ୍ତି । ସେମାନେ ଆଞ୍ଚଳିକତା ପରିହାର କରି ସାଧାରଣ ସ୍ତରରେ ଗୃହୀତ ଗୋଟିଏ ପ୍ରକାର ଭାଷାରେ ଲେଖିବା ଉଚିତ । ଦ୍ୱିତୀୟତଃ, କଥିତ ଭାଷାର ରୂପ ଭିନ୍ନ ଭିନ୍ନ । ତାହା ସାହିତ୍ୟରେ ପଶିଲେ ସାହିତ୍ୟ ଦୁର୍ବୋଧ ହୁଏ । କିନ୍ତୁ ନାଟକ ପ୍ରଭୃତିରେ କୌଣସି ଅଶିକ୍ଷିତ ଗାଉଁଲି ଲୋକ ଥିଲେ ତା ତୁଣ୍ଡରେ ତା ନିଜ ଭାଷା ନ ଦେଇ ସାଧୁ ସଂସ୍କୃତ ଭାଷା ଦେଲେ ଅସ୍ୱାଭାବିକ ଶୁଣାଯିବ । ଏଣୁ ସେହିଠାରେ ହିଁ କେବଳ କଥିତ ଅଶୁଦ୍ଧ ଭାଷା ସାହିତ୍ୟରେ ପଶିପାରେ । ଅନ୍ୟାନ୍ୟ ସ୍ଥଳରେ ଯେଉଁ ଭାଷା ବ୍ୟବହୃତ ହୋଇଥାଏ, ତାହା ଲେଖକଙ୍କ ଭାଷା ବୋଲି ଧରିନିଆଯାଏ । ସେ ଯଦି 'ନୁଣ' 'ନଙ୍ଗା' ଲେଖିବେ, ତେବେ ସାହିତ୍ୟର ମର୍ଯ୍ୟାଦା ରହିବ ତ ?

**ପ୍ରଶ୍ନ** (୯)—ବିଶେଷଣ ପଦରେ ବିଭକ୍ତି ଚିହ୍ନ ଯୋଗ କଲେ ଭୁଲ୍ ହେବ ବୋଲି ଆପଣ କହିଛନ୍ତି । 'ତେବେ ଅରକ୍ଷିତକୁ ଦଇବ ସାହା' କଣ ଭୁଲ୍ ?

**ଉତ୍ତର**—ଆଦୌ ଭୁଲ୍ ନୁହେଁ । ଏଠାରେ 'ଅରକ୍ଷିତକୁ' ଅର୍ଥ ଅରକ୍ଷିତ ଲୋକକୁ । ବିଶେଷ୍ୟ ଉହ୍ୟ ଥାଇ ବିଶେଷଣରେ ବିଭକ୍ତି ଚିହ୍ନ ଲାଗିବାର ଆଉ କେତୋଟି ଉଦାହରଣ— ଗାଲୁଆଙ୍କର ବାରବାଟୀ କୃଷ, ଧନୀର ପୁଅ, ଗରିବର ଜାତି ନାହିଁ ଇତ୍ୟାଦି । ଏ ସବୁଠାରେ ବିଶେଷଣ ବିଶେଷ୍ୟ ରୂପେ ବ୍ୟବହୃତ ହୋଇଛି ।

**ପ୍ରଶ୍ନ** (୧୦)—ଆବଶ୍ୟକୀୟ, ସଂକ୍ରାନ୍ତୀୟ, ବିରୁଦ୍ଧରେ, ସଠିକ୍, ବୃଥାରେ ପ୍ରଭୃତି ଶବ୍ଦ ଅଶୁଦ୍ଧ ହେଲେହେଁ ବହୁ ଲୋକ ତାହା ବ୍ୟବହାର କରୁଛନ୍ତି । ବହିରେ ଓ ପତ୍ରପତ୍ରିକାରେ ସେଗୁଡ଼ିକ ମଧ୍ୟ ଛାପା ହୋଇ ବାହାରୁଛି । ଏପରି ସ୍ଥଳେ ଆମେ କେବଳ ସେଭଳି ଶବ୍ଦ ବ୍ୟବହାର ନ କଲେ କି ଲାଭ ହେବ ?

**ଉତ୍ତର** – ନିଶ୍ଚୟ ଲାଭ ହେବ । ଶହେଟି ଭୁଲ୍‌ରୁ ଗୋଟିଏ ଅନ୍ତତଃ କମିଯିବ । ତୁମେ ଯାହାକୁ ଅଶୁଦ୍ଧ ବୋଲି ଜାଣିଲ, ତାକୁ ବର୍ଜନ କର । ତୁମ ଭାଷା ଶୁଦ୍ଧ ହେଉ । 'ଧୂମ୍ରପାନ' ଦିନେ ବହୁ ସ୍ଥାନରେ ଦେଖିବାକୁ ମିଳୁଥିଲା; କିନ୍ତୁ ଏହି ଉପାୟରେ ତାହା ସଂଶୋଧିତ ହୋଇପାରିଛି ।



# ପ୍ରୁଫ୍ ସଂଶୋଧନ

## ପ୍ରୁଫ୍ ଦେଖା ଏକ କଠୋର ଦାୟିତ୍ୱ—

ହାତରୁ ଟେକାଟାଏ ଖସିଗଲେ ତାକୁ ଫେରାଇ ଆଣିବା ଯେପରି ଅସମ୍ଭବ, ପ୍ରୁଫ୍‌ଦେଖା ତ୍ରୁଟିକୁ ସୁଧାରିବା ସେହିପରି କଷ୍ଟକର । ଅନେକେ ମନେକରନ୍ତି ପ୍ରୁଫ୍ ସଂଶୋଧନ ଗୋଟିଏ ଭଲ କାମ ନୁହେଁ; ମାତ୍ର ତାହା ଠିକ୍ ନୁହେଁ । ଅନଭିଜ୍ଞ ପ୍ରୁଫ୍ ରିଡର୍‌ଙ୍କ ତ୍ରୁଟି ଯୋଗୁ ଛପା ଜିନିଷରେ ଏତେ ଭୁଲ୍ ରହିଯାଏ ଯେ ତାହା ଗ୍ରହଣ କରିବାକୁ ଗ୍ରାହକ ମନା କରିଦିଅନ୍ତି ଏବଂ ଅନ୍ୟ ପ୍ରେସ୍‌ରେ ଆଉ ଥରେ ଛପାନ୍ତି । ଏହି ଦୋଷଯୋଗୁ ଲେଖକ, ପ୍ରକାଶକ ଏବଂ ମୁଦ୍ରାକର – ସମସ୍ତେ ନିନ୍ଦିତ ହୁଅନ୍ତି । ସବୁଠାରୁ ବେଶି ସମ୍ମାନହାନି ଘଟେ ମୁଦ୍ରାକରଙ୍କର । ଇଂରାଜୀ ଅପେକ୍ଷା ଓଡ଼ିଆ ଭାଷାର ପ୍ରୁଫ୍ ଦେଖିବା ଅଧିକ କଷ୍ଟକର, ଯେହେତୁ ସେଥିରେ ଭିନ୍ନ ଭିନ୍ନ ବନାନ, ହ୍ରସ୍ୱ ଦୀର୍ଘ, ତିନି ପ୍ରକାର ଶ ଷ ସ ଏବଂ ଆହୁରି ଯେ କେତେ କଣ ଅଛି, ତାର ସଂଖ୍ୟା ନାହିଁ । ଏଣୁ ପ୍ରୁଫ୍ ଦେଖା ବିଷୟରେ କେତେକ ସହାୟକ ସୂଚନା ଏଠାରେ ଦିଆଯାଉଅଛି ।

ସ୍ମରଣ କରାଯାଇପାରେ ଯେ ପୂର୍ବେ ପୁସ୍ତକର ମୁଦ୍ରଣ ଶେଷ ହେବାପରେ ଯଦି ବହୁତ ଅଶୁଦ୍ଧି ରହିଯାଇଛି ବୋଲି ଜଣାଯାଉଥିଲା, ତେବେ ଏକ ଶୁଦ୍ଧିପତ୍ର ଦିଆଯାଉଥିଲା । କିନ୍ତୁ ଏ ପ୍ରଥା ବର୍ତ୍ତମାନ ପ୍ରାୟ ଅନୁସୃତ ହେଉନାହିଁ । କାରଣ ଏହାଦ୍ୱାରା ବହିର ମୂଲ୍ୟ କମିଯିବ ଓ ପ୍ରେସ୍‌ର ଦୁର୍ନାମ ହେବ ବୋଲି ମନେ କରାଯାଉଛି । ତାଛଡ଼ା ଘାଅ ଲାଗିଯିବା ପରେ ସେଥିରେ ତେଲ ଦେଇ ଲାଭ କଣ ? ଗୋଟାଏ ଲମ୍ବା ଶୁଦ୍ଧିପତ୍ର ଦେବାଦ୍ୱାରା ଲାଭ ଅପେକ୍ଷା କ୍ଷତି ବରଂ ବେଶି ହେବ । ଚାରି ପାଞ୍ଚ ପୃଷ୍ଠା ଶୁଦ୍ଧିପତ୍ର ଦେଲେ ଛପାଖର୍ଚ୍ଚ ମଧ୍ୟ ବଢ଼ିଯିବ ।

## ପ୍ରୁଫ୍‌ରିଡର୍‌ଙ୍କ ଯୋଗ୍ୟତା—

ବିଶ୍ୱବିଦ୍ୟାଳୟର ଉଚ୍ଚ ଡିଗ୍ରୀ ଏ କାମରେ ବେଶି ସାହାଯ୍ୟ କରେ ନାହିଁ । ସଂଶୋଧକଙ୍କର ଭାଷା ଓ ସାହିତ୍ୟ ବିଷୟରେ ଉତ୍ତମ ଜ୍ଞାନ ଥିବା ଅବଶ୍ୟ ଆବଶ୍ୟକ । ସେ ଶୀଘ୍ର ଅଭିଧାନ ଦେଖିପାରୁଥିବେ ଏବଂ ସିଧା ବଙ୍କା ଓ ସୁନ୍ଦର

ଅସୁନ୍ଦର ଜାଣିପାରୁଥିବେ । ଟାଇପ୍‌ଗୁଡ଼ିକର ଫଣ୍ଟ୍ ବା ଆକାର ପ୍ରକାର ଏବଂ ପ୍ରୁଫ୍ ସଂଶୋଧନର ସାଙ୍କେତିକ ଚିହ୍ନ ସଂବନ୍ଧରେ ତାଙ୍କର ଜ୍ଞାନ ଥିବ । ଏ କାର୍ଯ୍ୟରେ ପାଣ୍ଡିତ୍ୟ ଅପେକ୍ଷା ଅଭ୍ୟାସ ଓ ତୀକ୍ଷ୍ଣ ଦୃଷ୍ଟି ଅଧିକ ପ୍ରୟୋଜନ ।

ପ୍ରୁଫ୍ ଦେଖା କାର୍ଯ୍ୟରେ ସାଧାରଣତଃ ଦୁଇଜଣ ଲୋକ ଆବଶ୍ୟକ ହୁଅନ୍ତି— ଜଣେ ପ୍ରୁଫ୍‌ରିଡର୍, ଅନ୍ୟ ଜଣେ କପି ହୋଲ୍‌ଡର ବା ମୂଳ ଲେଖା ଧରିବା ବ୍ୟକ୍ତି । କାର୍ଯ୍ୟରେ ଉଭୟଙ୍କର ମନୋନିବେଶ ଏକାନ୍ତ ଆବଶ୍ୟକ ।

## ପ୍ରୁଫ୍‌ରିଡର୍‌ଙ୍କ ପାଇଁ କେତେକ ଉପଦେଶ –

୧) ଏକାଗ୍ରଚିତ୍ତ ହୋଇ ପ୍ରୁଫ୍ ସଂଶୋଧନ କରନ୍ତୁ ।

୨) ବହି ପଢ଼ିବାବେଳେ ଯେପରି ଶବ୍ଦରୁ ଶବ୍ଦକୁ ଡେଇଁଯିବାକୁ ହୁଏ, ତା ନ କରି ପ୍ରତ୍ୟେକ ଅକ୍ଷରକୁ ପଢ଼ି ପଢ଼ି ଚାଲନ୍ତୁ ।

୩) ବିଷୟର ଶୀର୍ଷକ ବା 'ହେଡିଂ' କୁ ଚନ୍ଦ ଚନ୍ଦ କରି ପଢ଼ନ୍ତୁ । ତାହା ବଡ଼ ବଡ଼ ଅକ୍ଷରରେ ଥିବାରୁ ସେଥିରେ ଥିବା ଭୁଲ୍ ସହଜରେ ପାଠକମାନଙ୍କ ଆଖିରେ ପଡ଼ିବ ଏବଂ ଆପଣଙ୍କ ବାର ବର୍ଷର ତପସ୍ୟା ଶୁଖିଆ ପୋଡ଼ାରେ ଯିବ । ଛୁପା ବହିରେ ହେଡିଂ ଭୁଲ୍ ହେବାର ବହୁ ନଜିର ରହିଛି ।

୪) ସଂଖ୍ୟାଗୁଡ଼ିକ ପ୍ରତି ବିଶେଷ ନଜର ଦିଅନ୍ତୁ । ଗୋଟିଏ ଶୂନ (୦) ଏପାଖ ସେପାଖ ହେଲେ ବା କମ୍‌ବେଶି ହେଲେ ପ୍ରମାଦ ଗୁରୁତର ହୋଇଯିବ ।

୫) ଯଦି ୧, ୨, ୩, ୪...ପରି କ୍ରମିକ ସଂଖ୍ୟା ଥାଏ, ତାକୁ ପାଠଠାରୁ ସ୍ୱତନ୍ତ୍ର ଭାବରେ ପଢ଼ି ଦେଖନ୍ତୁ ତାହା ଠିକ୍ ଅଛି କି ନାହିଁ ।

୬) ବେଳେ ବେଳେ ଭୁଲ୍ ବର୍ଗର ଅକ୍ଷର (wrong font) ପଶି-ଯାଇଥାଏ । ତାକୁ ବଦଳାଇବାକୁ ନିର୍ଦ୍ଦେଶ ଦିଅନ୍ତୁ ।

୭) ଆରମ୍ଭ ହୋଇଥିବା ଉଦ୍ଧୃତି ଚିହ୍ନ ଶେଷ ହୋଇଛି କି ନା ଦେଖିନିଅନ୍ତୁ ।

୮) କେତେକ ଅକ୍ଷର ମଧ୍ୟରେ ଖୁବ୍ କମ୍ ପାର୍ଥକ୍ୟ ଥିବାରୁ ସେଗୁଡ଼ିକ ଅଦଳ ବଦଳ ହୋଇ ବସିଯାଇଥାଏ । ସେଗୁଡ଼ିକୁ ଲକ୍ଷ୍ୟ କରି ଦେଖନ୍ତୁ ଠିକ୍ ଅଛି କି ନାହିଁ । ଉଦାହରଣ ସ୍ୱରୂପ, ହ-ହ, ଙ--ଙ, ଷ-ଷ, ହ୍ମ-ହ୍ମ-ହ୍ନ, ଶୁ-ଶୂ, ଏହି ଜାତିପ୍ର ଅକ୍ଷର ଏବଂ ୁ ୂ ମାତ୍ରା ।

୯) କଂପୋଜିଟରମାନେ ନିଜର ସୁବିଧା ପାଇଁ ଓ ଅଜ୍ଞତା ଯୋଗୁ ବେଳେ ବେଳେ 'ସାଂସାରିକ'କୁ 'ସାସାରିକ', ଗାଁକୁ ଗାଁ, 'ପଂକ୍ତି'କୁ 'ପକ୍ତି', 'ତାଙ୍କର'କୁ 'ତାକଂର', 'ସଂଧ୍ୟା'କୁ 'ସନ୍ଧ୍ୟା' ରୂପେ ବସାଇଥାନ୍ତି । ସେ ଦିଗରେ ଲକ୍ଷ୍ୟ ରଖନ୍ତୁ ।

୧୦) ଡ ଓ ଡ଼ ଢ ଓ ଢ଼ ଭୁଲ୍ ସ୍ଥାନରେ ବସିଥିଲେ ତାକୁ କାଟି ଠିକ୍ କରନ୍ତୁ । ଏହି ପୁସ୍ତକର 'ପିଲାଙ୍କ ପ୍ରଶ୍ନ—ଆମ ଉତ୍ତର' ଅଧ୍ୟାୟରେ ୩୯ ପ୍ରଶ୍ନର ଆଲୋଚନା ଦେଖିନିଅନ୍ତୁ । ପ୍ରଭେଦ ଜାଣିପାରିବେ ।

୧୧) ଯଦି ପ୍ରୁଫ୍‌ରେ 'ରତ୍ନ', 'ଆତ୍ମା' ପ୍ରଭୃତି ଏହିପରି କଂପୋଜ୍ ହୋଇଥାଏ, ତାକୁ 'ରତ୍‌ନ' ଓ 'ଆତ୍‌ମା' ରୂପେ ବଦଳାଇ ଦିଅନ୍ତୁ । ଲେଟର୍ ପ୍ରେସ୍ ମେସିନ୍‌ରେ ଛପା ହେଲାବେଳେ ନ ଫଳା ଓ ମ ଫଳା ଭାଙ୍ଗିଯାଇପାରେ ।

୧୨) ପାଠରେ ଥିବା ବିଭାଗ ଓ ଉପବିଭାଗଗୁଡ଼ିକ ଠିକ୍ ନିୟମରେ ଆରମ୍ଭ ହୋଇଛି କି ନା ଦେଖିନିଅନ୍ତୁ । ୧, ୨, ୩, ୪ ପ୍ରଭୃତି ସଂଖ୍ୟାମାନ ଏବଂ (କ), (ଖ), (ଗ) ପ୍ରଭୃତି ଅକ୍ଷରଗୁଡ଼ିକ ତଳକୁ ତଳ ରହିବା କଥା । ତା ନ ହେଲେ ଅସୁନ୍ଦର ଦିଶିବ । ପୁନଶ୍ଚ, (କ)ରେ ଯଦି ଦୁଇପାଖିଆ ବନ୍ଧନୀ ଥାଏ, ଖ) ଗ)ରେ ଗୋଟିକିଆ ବନ୍ଧନୀ ନ ଦେଇ (କ) ପରି ଦୁଇପାଖିଆ ବନ୍ଧନୀ ଦିଅନ୍ତୁ ।

୧୩) ସଂଶୋଧନ ସୂଚାଇବାପାଇଁ ଯେଉଁ ସାଙ୍କେତିକ ଚିହ୍ନ ବ୍ୟବହାର କରୁଛନ୍ତି, ତାହା ସ୍ପଷ୍ଟ ଭାବରେ ଦିଅନ୍ତୁ । (ଏହି ଅଧ୍ୟାୟ ଶେଷରେ ସେ ଚିହ୍ନ-ଗୁଡ଼ିକର ନମୁନା ଓ ଅର୍ଥ ଦିଆଯାଇଛି ।)

୧୪) ବହି ଫର୍ମାର ପ୍ରୁଫ୍ ଦେଖିସାରିବାପରେ ପୃଷ୍ଠାଙ୍କ ଏବଂ ପୃଷ୍ଠା-ଶୀର୍ଷକ (page heading) ଠିକ୍ ଅଛି କି ନାହିଁ ମିଳାଇ ନିଅନ୍ତୁ ।

୧୫) ବହିର ଇନର୍ ପୃଷ୍ଠାରେ (Inner title page) ବା ପତ୍ରିକାର ବିଷୟଗୁଡ଼ିକ ତଳେ ଲେଖକମାନଙ୍କର ନାମ ଭଲ କରି ଦେଖିନିଅନ୍ତୁ । ପତ୍ରିକାର ପାଣ୍ଡୁଲିପିରେ ଯାହା ଥାଉ ପଛେ, ମୁଦ୍ରିତ ପତ୍ରିକାରେ ଲେଖକଙ୍କ ନାମ ସବୁ ଏକା ପ୍ରକାର ଅକ୍ଷର ଓ ଶୈଳୀରେ ରହିବା ଉଚିତ ।

୧୬) ପ୍ରୁଫ୍‌ଗୁଡ଼ିକ ସାଧାରଣତଃ ଅସ୍ପଷ୍ଟ ଥାଏ; ତେଣୁ କୌଣସିଠାରେ ପଢ଼ି ହେଉ ନ ଥିଲେ ତାକୁ ବେଖାତିର କରି ଛାଡ଼ିଯାଆନ୍ତୁ ନାହିଁ । ଅସ୍ପଷ୍ଟ ଶବ୍ଦଟିକୁ

କାଟି ଦେଇ ଠିକ୍ ଶବ୍ଦଟି ଲେଖି ଦିଅନ୍ତୁ । ବନାନରେ ସନ୍ଦେହ ହେଲେ ଭଲ ଅଭିଧାନ ଦେଖି ସଂଶୋଧନ କରିଦିଅନ୍ତୁ ।

୧୭) ଏହି ଅସ୍ପଷ୍ଟତା ଯୋଗୁ ଓଲଟା ବସିଥିବା ବ୍ଲକ୍‌ଟିକୁ ପରୀକ୍ଷା ନ କରି କେହି କେହି ପ୍ରୁଫ୍ ରିଡର୍ ସେମିତ ଛାଡ଼ିଦିଅନ୍ତି । ଏହା ଫଳରେ ଛାପା ବହି ବା ପତ୍ରିକାରେ ଚିତ୍ରଟି ଓଲଟା ଛପା ହୋଇଯାଏ ।

୧୮) ମନୁଷ୍ୟଙ୍କ ଚିତ୍ର ତଳେ ଯେଉଁଠି ସେମାନଙ୍କ ନାମ ଦିଆଯାଏ, ତାକୁ ଭଲ ଭାବରେ ମିଳାଇ ଦେଖନ୍ତୁ; ନଚେତ୍ ପଟେଲଙ୍କ ଛବି ତଳେ ମାଲବ୍ୟଙ୍କ ନାମ ଛପା ହୋଇ ବାହାରିବ । ଛାପାଖାନାକୁ ସବୁ ବ୍ଲକ୍ ଏକ ସମୟରେ ଆସି-ଥିବାରୁ ଏ ଭୁଲ୍ ଘଟିବା ଅସମ୍ଭବ ନୁହେଁ ।

୧୯) ସ୍ପେସ୍ ବା ବ୍ୟବଧାନ—ଦୁଇ ଶବ୍ଦ ଓ ଦୁଇ ଧାଡ଼ି ମଧ୍ୟରେ ଉପଯୁକ୍ତ ସ୍ପେସ୍ ବା ଫାଙ୍କ ରହୁଛି କି ନାହିଁ ଦେଖିବା ପ୍ରୁଫ୍ ସଂଶୋଧକଙ୍କର ଏକ ପ୍ରଧାନ କାର୍ଯ୍ୟ । ଏହା ଭାଷାଜ୍ଞାନ ବା ପାଣ୍ଡିତ୍ୟ ଦରକାର କରେ ନାହିଁ ସତ, କିନ୍ତୁ ଏଥିରେ ତ୍ରୁଟି ରହିଲେ ଲେଖା ହେଉ ବା ଛାପା ହେଉ, କୌଣସି ପାଠ ସହଜରେ ପଢ଼ି ବୁଝି ହେବ ନାହିଁ । ଏପରିକି ବାକ୍ୟର ଅର୍ଥ ମଧ୍ୟ ବଦଳିଯାଇପାରେ । ନିର୍ଦ୍ଦିଷ୍ଟ ସ୍ଥାନରେ ଫାଙ୍କ ଦେବା ଉଚିତ । ତା ନ ହେଲେ 'ଏ ଘଣ୍ଟାଟା ସେ ଅଙ୍କନ କରୁ' ହୋଇଯିବ 'ଏ ଘଣ୍ଟାଟା ସେ ଅଙ୍କ ନ କରୁ' । 'ଗାଢ଼ ବାଦାମୀ ରଙ୍ଗ' ହୋଇଯିବ 'ଗାଢ଼ ବା ଦାମୀ ରଙ୍ଗ', 'ପ୍ରକାଶନ କରି' ହୋଇଯିବ 'ପ୍ରକାଶ ନ କରି' ।

ଏଠାରେ ଦିଆଯାଇଥିବା ଦୁଇଟି ଶବ୍ଦକୁ ଲକ୍ଷ୍ୟ କରନ୍ତୁ : କ୍ଲାନ୍ତ, କ୍ଲାନ୍ତ । ପ୍ରଥମଟିରେ କ ଓ ନ୍ତ ଭିତରେ ଅଧିକ ଫାଙ୍କ ରହିଥିବାରୁ ଅସୁନ୍ଦର ଦିଶୁଛି । ଛାପାରେ କୌଣସି କୌଣସିଠାରେ ଏପରି ଦେଖିଥିବେ । କିନ୍ତୁ ତାହା ରହିବା କଥା ନୁହେଁ । ଫଳା ମାତ୍ରା ଯେଉଁଠି ଅକ୍ଷରରେ ସ୍ୱତନ୍ତ୍ର ଭାବରେ ଯୋଡ଼ାଯାଏ, ସେଠାରେ କିଛି ଫାଙ୍କ ରହିଯିବା ନିଶ୍ଚିତ । ତାହାକୁ ଏଡ଼ିବା ପାଇଁ ବ୍ୟଞ୍ଜନ ବର୍ଣ୍ଣ ଓ ଯୁକ୍ତାକ୍ଷର ଟାଇପ୍‌ରୁ କେତେକ ଅଂଶ କାଟି ତାକୁ 'କଟା ଅକ୍ଷର' ଭାବେ ଗୋଟା ଅକ୍ଷରଠାରୁ ସ୍ୱତନ୍ତ୍ର ରଖାଯାଇଥାଏ । ସେଥିରେ ଫଳାମାତ୍ରା ଯୋଡ଼ିଲେ ଆଉ ଫାଙ୍କ ରହେ ନାହିଁ । ପ୍ରେସ୍‌ରେ କଟା ଟାଇପ୍ ନ ଥିଲେ କମ୍ପୋଜିଟର ଗୋଟା ଟାଇପ୍‌ରେ ଫଳାମାତ୍ରା ଲଗାଇ ଦିଅନ୍ତି, ଯେପରି ଉପରେ ପ୍ରଥମ ଶବ୍ଦଟି ହୋଇଛି । ପ୍ରୁଫ୍ ରିଡର୍ ଏ ଦିଗରେ ନଜର ଦେବା ଆବଶ୍ୟକ ।

ବନ୍ଧନୀକୁ ଅକ୍ଷର ସଙ୍ଗେ ଲଗାଇ ନ ଦେଇ ଟିକଏ ଛଡ଼ାରେ ରଖିଲେ ସ୍ପଷ୍ଟ ହୁଏ । ଉଦାହରଣ : (ମହାନଦୀ), ( ମହାନଦୀ ) ।

ଏହି 'ସ୍ପେସିଂ' ଦେଖିବା ପ୍ରୁଫ୍‌ରିଡରଙ୍କ ପକ୍ଷରେ ଯେମିତି ଗୁରୁତ୍ୱପୂର୍ଣ୍ଣ, ଯେଉଁ ଯୁଗ୍ମ ଶବ୍ଦ ଏକାଠି ରହିବା କଥା, ତାକୁ ପୃଥକ୍ ରଖିବା ମଧ୍ୟ ସେହିପରି ଭୁଲ୍ । ନିମ୍ନ ଉଦାହରଣ ଦେଖନ୍ତୁ ।

କ) ବିଶେଷଣ ପରେ ବିଶେଷ୍ୟ ଥିଲେ କେହି କେହି ତାକୁ ଭିନ୍ନ ଶବ୍ଦ ନ କରି ଏକାଠି ରଖିଦିଅନ୍ତି, ଯଥା – ବଡ଼ଭାଇ, ମୁଖ୍ୟମନ୍ତ୍ରୀ, ପାଞ୍ଚଟଙ୍କା ଇତ୍ୟାଦି । ଏହା ସେପରି ବଡ଼ ଭୁଲ୍ ନ ହେଲେ ହେଁ ମୁଦ୍ରଣର ସ୍ପଷ୍ଟତାପାଇଁ ଦୁଇଟି ଶବ୍ଦକୁ ପୃଥକ୍ ରଖିବା ଉଚିତ । ମନରେ ସନ୍ଦେହ ହେଲେ ଇଂରାଜୀ ଭାଷାର ଗୀତ ମନେ ପକାନ୍ତୁ— Elder brother, Chief minister, Five rupees.

ଏହି ଯେ, ଯାହା ହେଉ, ସେ ବି, ଜାଣିଛ କି, ତୁମେ ତ, ଗୃହ ରେ ଗୃହ, ଖେଳୁ ଖେଳୁ, ଭୁମହାଣ ହିଁ, ଖାଉଥିଲେ ହେଁ— ଏ ସବୁ ଭିତରେ ସ୍ପେସ୍ ରହିବା ଉଚିତ ।

ଖ) ଯେଉଁଠି ସ୍ପେସ୍ (ବ୍ୟବଧାନ) ନ ରହିବା କଥା, ସେଠି ଦୁଇଟି ଶବ୍ଦକୁ ଅଲଗା ରଖିବା ମଧ୍ୟ ଭୁଲ୍ । ବହୁବଚନ ଚିହ୍ନଗୁଡ଼ିକ ବିଶେଷ୍ୟଠାରୁ ପୃଥକ୍ ରହିବା ଠିକ୍ ନୁହେଁ । ବହିଗୁଡ଼ିକ, ନଦୀସମୂହ, ନେତୃବୃନ୍ଦ—ଏହାକୁ ବହି ଗୁଡ଼ିକ, ନଦୀ ସମୂହ, ନେତୃ ବୃନ୍ଦ— ଏପରି ଛାପିଲେ ଭୁଲ୍ ହେବ ।

ବିଭକ୍ତି ଚିହ୍ନଗୁଡ଼ିକ ମଧ୍ୟ ଓଡ଼ିଆରେ ଶବ୍ଦ ସଂଗେ ମିଶି କରି ରହେ, ଯଥା— ମୋହାରୁ, କଟକରେ, ମନୁଷ୍ୟମାନଙ୍କୁ, ପକେଟରୁ ପ୍ରଭୃତି ।

ଯାଇପାରେ, ଖାଇପାରେ— ଏପରି ସ୍ଥଳରେ ମଝିରେ ବ୍ୟବଧାନ ଦିଆଯିବା ଠିକ୍ ନୁହେଁ ।

ସମସ୍ତ ପଦ ହୋଇଗଲେ ଏକାଧିକ ଶବ୍ଦ ମିଶି ଗୋଟିଏ ଶବ୍ଦ ହୋଇଯାଏ— ଫଳପୁଷ୍ପ, ପଞ୍ଚତନ୍ତ୍ର, ହିଭୁଜ, ବୀଣାପାଣି, ଭିକ୍ଷାପାତ୍ରହସ୍ତ ଇତ୍ୟାଦି । ଏ ମଧ୍ୟ ମିଶିକରି ରହିବ ।

କରୁଅଛି, କରୁଛି ପରି କରୁନାହିଁ, କରୁନ ଏକାଠି ମିଶିବ, କିନ୍ତୁ 'ନ' କ୍ରିୟାପୂର୍ବରେ ଥିଲେ ଅଲଗା ରହେ, ଯଥା – ନ ଥାଉ, ନ ଯିବାରୁ, ନ କଲି ଇତ୍ୟାଦି ।

ଯଦି ଧାଡ଼ିଶେଷରେ ଗୋଟିଏ ଶବ୍ଦପାଇଁ ଯଥେଷ୍ଟ ଜାଗା ନ ଥାଏ, ତେବେ ତାକୁ ଭାଙ୍ଗିଦେଇ କିଛି ଅଂଶ ତଳ ଧାଡ଼ିକୁ ନିଆଯାଏ । ଏପରିସ୍ଥଳେ ଭାଙ୍ଗିବା ସ୍ଥାନରେ ହାଇଫେନ (-) ଦିଆଯିବା ନିୟମ । ତେବେ ଶବ୍ଦକୁ ଯେ କୌଣସି ସ୍ଥାନରେ ଭାଙ୍ଗିବା ଠିକ୍ ନୁହେଁ । ଗୋଟିଏ ବହିରେ 'ବାମଣ୍ଡାରାଜା' ଭଙ୍ଗା ହୋଇ ପ୍ରଥମ ଧାଡ଼ିରେ 'ବା' ଏବଂ ତଳ ଧାଡ଼ିରେ 'ମଣ୍ଡାରାଜା' ଛପାଯାଇଛି । ଏହା ପ୍ରୁଫ୍‌ଦେଖାର ତ୍ରୁଟି ପ୍ରମାଣିତ କରୁଛି । ବାମଣ୍ଡା ଶବ୍ଦଟି ରଖିବାକୁ ସ୍ଥାନ ନ ଥିଲେ ସମ୍ପୂର୍ଣ୍ଣ ଶବ୍ଦଟିକୁ ତଳ ଧାଡ଼ିକୁ ନିଆଯିବା ଉଚିତ ଥିଲା ।

ଅଙ୍କ (ରାଶି) ଯେତେ ବଡ଼ ହେଲେ ସୁଦ୍ଧା ତାକୁ ମଝିରୁ ନ ଭାଙ୍ଗି ଏକତ୍ର ରଖନ୍ତୁ ।

ମୂଳ ଲେଖାର କିଛି ଅଂଶ କଂପୋଜ୍ ବେଳେ ଛୁଟିଯାଇଥିଲେ ଗ୍ୟାଲି ପ୍ରୁଫ୍ ସ୍ତରରେ ତାହା ସଂଶୋଧିତ ହେବା ବିଧେୟ । ତାହା ନ ହୋଇ ଶେଷକୁ ରହିଗଲେ ମୁଦ୍ରଣ କାର୍ଯ୍ୟରେ ଘୋର ବିଶୃଙ୍ଖଳା ଜାତ ହୁଏ ।

## କେତେକ ଇଂରାଜୀ ଶବ୍ଦ

ଇଂରେଜ ପାଦ୍ରୀମାନେ ପ୍ରଥମେ ଓଡ଼ିଶାରେ ଛାପାଖାନା ବସାଇଥିଲେ । ତେଣୁ ସେହି ସମୟରୁ କେତେକ ଇଂରାଜୀ ଶବ୍ଦ ଆମ ପ୍ରେସ୍‌ମାନଙ୍କରେ ଚଳୁଛି ଏବଂ ତାର ଅର୍ଥ ଛାପାଖାନା କାମରେ ସମ୍ପୃକ୍ତ ସମସ୍ତେ ବୁଝନ୍ତି ।

**Compose**— ଅକ୍ଷର ଖଞ୍ଜିବା, **Copy**— ଛପାଯାଉଥିବା ପାଠର ମୂଳ ଲେଖା ।

**Proof**— କମ୍ପୋଜ ହୋଇଥିବା ପାଠର ହାତରେ ଉଠାଯାଇଥିବା ଛାପା ।

**galley proof**— ଗ୍ୟାଲି ଉପରେ ଥିବା ପାଠର ଛାପା ।

**galley**— କାଠ ବା ଧାତୁର ବିଶେଷ ଧରଣର ଡାଲା, ଯାହା ଉପରେ କମ୍ପୋଜ ହୋଇଥିବା ଅକ୍ଷର ରଖାଯାଏ ।

**Type**— ଅକ୍ଷର । **space**— ଦୁଇ ଶବ୍ଦ ମଧ୍ୟରେ ଥିବା ଫାଙ୍କ ବା ବ୍ୟବଧାନ ।

**wrong font**— ଭୁଲ୍ ବର୍ଗର ଅକ୍ଷର । ଏହାର ସାଙ୍କେତିକ ଚିହ୍ନ wf ।

**Delete**— ଉଠାଇ ଦେବା । ଏହାର ମୂଳ ଅକ୍ଷର D କୁ ସାଙ୍କେତିକ ଚିହ୍ନରୂପେ ବ୍ୟବହାର କରାଯାଏ ।

**Proof Reader**— ଯେ ପ୍ରୁଫ୍‌କୁ ପଢ଼ି ସଂଶୋଧନ କରନ୍ତି ।

# ପ୍ରୁଫ୍ ସଂଶୋଧନ ପ୍ରଣାଳୀ

ମୁଁ କହିଲି, ଆମଦେଶରେ ଅସଂଖ୍ୟ
ପ୍ରାଚୀର ପତ୍ର ଲଗାଯାଏ ରାସ୍ତାରେ ମାଡ଼ିମାଲ
ପ୍ରାଚୀରପତ୍ର ଝୁଲୁଛି । ମାତ୍ର, ଏଠି ସେପରି
ପ୍ରାୟ ମୁଁ ଦେଖିନାହିଁ ।
ଘରଆଡ଼ ପରିଷ୍କାର ରହିଛି । ମୋ
କଥାଶୁଣି ସେ ହସିଲେ ଏବଂ କହିଲେ, ଆମ
ଦେଶରେ ବେସରକାରୀ ହେଉ କେନ୍ଦ୍ର ସ୍ଥାନ
ବା ନାମରେ କୌଣସିଠାରେ ପ୍ରାଚୀରପତ୍ର
ମାରିଲେ ଦଣ୍ଡିତ ହେବ । ଏ ବିଷୟ ରହିବ
ଟେରୋରିଷ୍ଟ କଡ଼ା ଆଇନ କାନୁନ୍ ରହିଛି ।"

* ବା ସରକାରୀ ହେଉ ,

## ସାଙ୍କେତିକ ଚିହ୍ନର ବ୍ୟାଖ୍ୟା

[ ଭୁଲ୍‌ଗୁଡ଼ିକ ସଂଶୋଧନ କଲାବେଳେ ଧାଡ଼ିର ଉଭୟ ପାଖରେ ଥିବା ଚିହ୍ନଗୁଡ଼ିକ ପ୍ରତି ଦୃଷ୍ଟି ଦେବାକୁ ହୁଏ । ସାଧାରଣତଃ ବାମ ପାଖର ସଂଶୋଧନ ପାଇଁ ବାମ ପଟେ ଓ ଡାହାଣ ପାଖର ସଂଶୋଧନ ପାଇଁ ଡାହାଣ ପଟେ ଚିହ୍ନ ଦିଆଯାଏ । ]

୧ମ ଧାଡ଼ି—'ଆମ' ପୂର୍ବରୁ ଉଦ୍ଧୃତ ଚିହ୍ନ ରହିବ । 'ଆମ' ଶବ୍ଦ ପରେ ଫାଙ୍କ (space) ଦିଅ । ଅ ଅକ୍ଷରଟି ଭିନ୍ନ ବର୍ଗର । ସେଠାରେ କଳା ଅ ଦିଅ ।

୨ୟ ଧାଡ଼ି—ପ୍ରାଚୀର ପତ୍ର ମିଶାଇ ପ୍ରାଚୀରପତ୍ର କର । 'ଲଗାଯାଏ' ପରେ ପୂର୍ଣ୍ଣଚ୍ଛେଦ ଦିଅ । ଲ ଓଲଟା ବସିଛି, ସଜାଡ଼ ଦିଅ ।

୩ୟ ଧାଡ଼ି—ଚ କୁ ଚୀ କର । 'ଝୁଲୁଥାଏ'କୁ ଗୋଟିଏ ଶବ୍ଦ କର । ମାତ୍ର ପରେ ଥିବା କମା ଉଠାଇଦିଅ । 'ଏ' ଭଙ୍ଗା ଅକ୍ଷରକୁ ବଦଳାଅ ।

୪ର୍ଥ ଧାଡ଼ି—'ପ୍ରାୟ ମୁଁ' ହେବ 'ମୁଁ ପ୍ରାୟ' । ଦେଖୁନି ର ଖୁ କୁ ଖୁ କର । ଶେଷର ସ୍ପେସ୍ ଦାଢ଼ି ଦିଅ । ପରବର୍ତ୍ତୀ ପାରାର ପ୍ରଥମ ବାକ୍ୟକୁ ଆଣି ଏଠାରେ ମିଶାଅ ।

୫ମ ଧାଡ଼ି—'ରହିଛି' ପରେ ଉଦ୍ଧୃତ ଚିହ୍ନ ପଡ଼ିବ । 'ମୋ' ଠାରୁ ନୂଆ ପାରା ଆରମ୍ଭ କର ।

୬ଷ୍ଠ ଧାଡ଼ି—'କଥାଶୁଣି' ମଝିରେ ସ୍ପେସ୍ ଦିଅ । କହିଲା ପରେ କମା ରହିବ । 'ଆମ' ପୂର୍ବରୁ ଉଦ୍ଧୃତ ଚିହ୍ନ ଆରମ୍ଭ ହେବ ।

୭ମ ଧାଡ଼ି—'ଣ' ଅକ୍ଷର ଉପରକୁ ଉଠିଯାଇଛି; ସମାନ କରି ବସାଅ । 'ହେଉ' ପରେ ପାଠ ଛାଡ଼ି ଅଛି; * ଚିହ୍ନ ପାଖେ ଥିବା ପାଠକୁ ସେଇଠି ଦିଅ ।

୮ମ ଧାଡ଼ି—ବିନା ପରେ ନୁ ଛାଡ଼ି ଅଛି, ବସାଅ । କୈ କୁ କୌ କର । ଧାଡ଼ି ଶେଷରେ ଥିବା 'କୁ' ଉଠାଅ ।

୯ମ ଧାଡ଼ି—'ମାରିଲେ' ଶବ୍ଦକୁ ଧାଡ଼ି ମୂଳକୁ ଆଣ । 'ଦଣ୍ଡିତ' ଭୁଲ୍‌ରେ କଟା ହୋଇଯାଇଥିଲା, କିନ୍ତୁ ତାହା ପୂର୍ବ ସ୍ଥାନରେ ରହିବ ।

୧୦ମ ଧାଡ଼ି—'ରେ' କୁ ଉପର ଧାଡ଼ି ଶେଷକୁ ନିଅ । ବ ତଳେ ହଳନ୍ତ ଦିଅ । ଡା କୁ ଡ଼ା କର ।

## ସଂଶୋଧିତ ପ୍ରୁଫ୍

ମୁଁ କହିଲି, "ଆମ ଦେଶରେ ଅସଂଖ୍ୟ ପ୍ରାଚୀରପତ୍ର ଲଗାଯାଏ । ରାସ୍ତାରେ ମାଳ ମାଳ ପ୍ରାଚୀରପତ୍ର ଝୁଲୁଥାଏ । ମାତ୍ର ଏଠି ସେପରି ମୁଁ ପ୍ରାୟ ଦେଖୁନି । ଚାରିଆଡ଼ ପରିଷ୍କାର ରହିଛି ।"

ମୋ କଥା ଶୁଣି ସେ ହସିଲା ଏବଂ କହିଲା, "ଆମ ଦେଶରେ ବେସରକାରୀ ହେଉ ବା ସରକାରୀ ହେଉ, କେହି ବିନାନୁମତିରେ କୌଣସିଠାରେ ପ୍ରାଚୀରପତ୍ର ମାରିଲେ ଦଣ୍ଡିତ ହେବ । ଏ ବିଷୟରେ ଖୁବ୍ କଡ଼ା ଆଇନକାନୁନ୍ ରହିଛି ।"



# ମୁଁ କିପରି ଲେଖକ ହେବି

ଲେଖକ ହେବା ପାଇଁ ଅନେକେ ଇଚ୍ଛା କରନ୍ତି । ଲେଖାଲେଖିକୁ ବୃତ୍ତି ଭାବରେ ଗ୍ରହଣ କଲେ ବେଶି ଧନ ମିଳିବ, ଏ ଆଶାରେ ନୁହେଁ; ଲେଖକର ସବୁଠାରେ ସମ୍ମାନ ଅଛି ବୋଲି । ସାଧାରଣତଃ ଦେଖାଯାଏ, ସଫଳ ଲେଖକମାନେ ଅଳ୍ପ ବୟସରୁ ଲେଖାଲେଖି ଆରମ୍ଭ କରିଥାନ୍ତି । ବିଦ୍ୟାଳୟରେ ଛାତ୍ରଛାତ୍ରୀମାନେ 'ରଚନା' ଲେଖିବା ଶିକ୍ଷା କରନ୍ତି । ରେଲ୍‌ଯାତ୍ରା, ବଣଭୋଜି ବା ସରସ୍ୱତୀ ପୂଜା ପ୍ରଭୃତି ବିଷୟରେ ଲେଖି ସେମାନଙ୍କ ଲେଖକ ଜୀବନ ଆରମ୍ଭ କରନ୍ତି । ଯଦି ବିଦ୍ୟାଳୟର ନିଜର ପତ୍ରିକା ଥାଏ, ସେଥିରେ କେତେକ ଲେଖା ପ୍ରକାଶ କରି ସେମାନଙ୍କୁ ଉତ୍ସାହିତ କରାଯାଏ ।

ସାହିତ୍ୟ ଏକ କଳା । ଗଦ୍ୟ ହେଉ ବା ପଦ୍ୟ ହେଉ, କଳାତ୍ମକ ପ୍ରକୃତି ଲେଖକ ହେବାରେ ମନୁଷ୍ୟକୁ ସାହାଯ୍ୟ କରେ । କଥାକୁ କିପରି ଆରମ୍ଭ କରିବ, କିପରି ସଜାଇ କହିବ ଏବଂ କିପରି ଶେଷ କରିବ— ଏ ବିଷୟ ପ୍ରଥମରୁ ଭାବିନେବାକୁ ହୁଏ । ଘରଟିଏ ତିଆରି କରିବାପୂର୍ବରୁ ଯେପରି ତାର ନକ୍‌ସା (plan) ପ୍ରସ୍ତୁତ କରାଯାଏ , ଏ ଠିକ୍ ସେହିପରି । ଶବ୍ଦଗୁଡ଼ିକୁ କିପରି ସଜାଇ ଲେଖିଲେ ଏବଂ କେଉଁ ଶବ୍ଦ କେଉଁଠି ବସାଇଲେ ଶ୍ରୁତିମଧୁର ଓ ମନଛୁଆଁ ହେବ— ଏହା ଯେ ଭାବିପାରେ ନାହିଁ, ସେ ଭଲ ଲେଖକ ହୋଇପାରିବ ନାହିଁ । ଏପରିକି 'ଗୁଣ୍ଡା ଲୋକଟା' ନ କହି 'ଗୁଣ୍ଡା ଲୋକଟି' କହିଲେ କିମ୍ବା 'ଶ୍ରେଷ୍ଠ ପିଲାଟି' ନ କହି 'ଶ୍ରେଷ୍ଠ ପିଲାଟା' ଲେଖିଲେ ଭାଷାର ସୌନ୍ଦର୍ଯ୍ୟ ଓ ଭାବସାମ୍ୟ ନଷ୍ଟ ହୋଇଯାଏ । ଗୁଣ୍ଡା ଲୋକ ସବୁ ଦେଶରେ ଅବଜ୍ଞାର ଏବଂ ଶ୍ରେଷ୍ଠ ପିଲା ଶ୍ରଦ୍ଧାର ପାତ୍ର ।

ଶିକ୍ଷା ବା ଉପଦେଶ ଦେଇ କାହାକୁ କବି ବା ଲେଖକ କରାଯାଇପାରିବ ନାହିଁ । ସିଦ୍ଧହସ୍ତ କବି ଓ ଲେଖକମାନଙ୍କ ଗ୍ରନ୍ଥର ଅଧ୍ୟୟନରୁ ଯେଉଁ ପ୍ରେରଣା ମିଳେ, ତାହା ଲେଖକକୁ ବାଟ ଦେଖାଏ । କବିମାନେ ଜନ୍ମରୁ ଯେଉଁ ପ୍ରତିଭା ପାଇଥାନ୍ତି, ତାହାର ଉପଯୋଗ ପାଇଁ ପଥ ପରିଷ୍କାର ହୋଇଯାଏ । ଏଠାରେ ଛାତ୍ରଛାତ୍ରୀମାନଙ୍କ ଉଦ୍ଦେଶ୍ୟରେ କେତେକ ସହାୟକ ସୂଚନା ଦିଆଯାଉଛି । ଇଚ୍ଛା ହେଲେ ଅନ୍ୟମାନେ ତାହା ଗ୍ରହଣ କରିପାରନ୍ତି ।

(୧) ତୁମର ଲେଖାଟି ଶୁଦ୍ଧ ଭାଷାରେ ଲେଖା ହେବା ଆବଶ୍ୟକ । କେବଳ ସେତିକି ନୁହେଁ, ତାହା ଯେପରି ସୁଶ୍ରାବ୍ୟ ଓ ସୁପାଠ୍ୟ ହେବ, ଦୃଷ୍ଟି ଦିଅ । 'ମାସକ ମଧ୍ୟରେ ସେ ବାପାଙ୍କୁ ମଧ୍ୟ ଭୁଲିଗଲେ' । ଏଥିରେ ଲଗ୍ ଲଗ୍ ଦୁଇଟି 'ମଧ୍ୟ' ଥିବାରୁ ଭଲ ଶୁଭୁନାହିଁ, ତେଣୁ 'ମାସକଭିତରେ' କରିଦେଲେ ଭଲ ହେବ ।

ସେହିପରି 'ବୃଦ୍ଧଟିର କଥାଟି ପିଲାଟି ମନରେ ଆଶାର ସଞ୍ଚାର କଲା'— ଏ ବାକ୍ୟରେ କେଉଁଟି 'ଟି' ଭଲ ଶୁଭୁଛି କି ? ବଦଳାଇ ଦିଅ ।

(୨) ପୁନରାବୃତ୍ତି କରନା । 'ଗୋରା ସାହେବ' ସ୍ଥାନରେ 'ଗୋରା ଲୋକ' କିମ୍ବା କେବଳ 'ସାହେବ' କଲେ ଚଳିବ । 'ତାଙ୍କର ପିଲାପିଲି ନ ଥିଲେ । ସେ ଥିଲେ ସମ୍ପୂର୍ଣ୍ଣ ନିଃସନ୍ତାନ' – ଏଠାରେ ଦ୍ୱିତୀୟ ବାକ୍ୟଟି ଅନାବଶ୍ୟକ ।

(୩) ସଂଖ୍ୟାଗୁଡ଼ିକ ଅକ୍ଷରରେ ଦିଅ । '୧୦ ବର୍ଷ' ସ୍ଥାନରେ 'ଦଶ ବର୍ଷ ଲେଖ । କୌଣସି ଶବ୍ଦ ଦୁଇଥର ଲେଖିବାର ଥିଲେ ୨ ଲେଖିଦେଇ କାମ ଚଳାଅନା । 'ଖାଉ ୨', 'ଗୃଲ ୨' ନ ଲେଖି ପୂରା କଥାଟି ଲେଖ—ଖାଉ ଖାଉ, ଗୃଲ ଗୃଲ ।

(୪) ଯଦି କୌଣସି ମହାପୁରୁଷଙ୍କ ଜୀବନୀ ଲେଖୁଛ, ତାଙ୍କ ଜୀବନର କୌଣସି ଶିକ୍ଷଣୀୟ ଘଟଣାରୁ ତୁମ ଲେଖା ଆରମ୍ଭ କର । ପ୍ରଥମରୁ 'ସେ ୧୮୭୬ ଖ୍ରୀଷ୍ଟାବ୍ଦରେ ଆଗ୍ରା ନଗରୀରେ ଜନ୍ମ ହୋଇଥିଲେ' ଠାରୁ 'ସେ ୧୯୪୨ ଖ୍ରୀଷ୍ଟାବ୍ଦରେ ରାଞ୍ଚିରେ ପ୍ରାଣତ୍ୟାଗ କଲେ'— ଏ ଶୈଳୀରେ ଜୀବନୀ ଲେଖିବା ଅତ୍ୟନ୍ତ ନୀରସ ।

(୫) ଯଦି ଗଳ୍ପ ଲେଖୁଛ, ସେଥିରେ 'ଭାଗ୍ୟବଳରୁ ଲୋକ ଯଶସ୍ୱୀ ହେଲା' ଏ ଶିକ୍ଷା ଦିଅ ନା । ଦେଖାଅ— ଶ୍ରମ ଓ ଅଧ୍ୟବସାୟ ତାକୁ ଯଶସ୍ୱୀ କରିଛି ।

(୬) ମନୁଷ୍ୟ ବା ଜୀବଜନ୍ତୁଙ୍କ ପ୍ରତି ଘୃଣା ସୂଚୁଥିବା କିଛି ବିଷୟ ଲେଖନା । ସମସ୍ତଙ୍କ ପ୍ରତି ଶ୍ରଦ୍ଧା ଓ ସମଦୃଷ୍ଟି ତୁମ ଗଳ୍ପରେ ପ୍ରକାଶ ପାଉ । ବଡ଼ ଜାତି, ଶ୍ରେଷ୍ଠ ଜାତି ଏ ଭାବନା ତୁମ ଲେଖାକୁ କଳୁଷିତ ନ କରୁ ।

(୭) କେହି କେହି କବିତାରେ ଲେଖନ୍ତି – 'ଅସାର ସଂସାର ଦୁଃଖର ଆଗାର', କିମ୍ବା 'ଦୀନ ହୀନ ମୁହିଁ ଅକିଞ୍ଚନ' – ଏ ଭାବ ତୁମ ଲେଖାରେ ପ୍ରକାଶ ନ ପାଉ । ସଂସାରକୁ ସୁଖର ସ୍ଥାନ ଏବଂ ନିଜ ଜୀବନକୁ ମୂଲ୍ୟବାନ ମନେକର । ସେଥିରେ ନିଜେ ଆନନ୍ଦ ପାଇବ ଏବଂ ଅନ୍ୟକୁ ଆନନ୍ଦ ଦେଇପାରିବ ।

(୮) ଯଦି ପ୍ରବନ୍ଧ ଲେଖୁଛ, ତେବେ ଉପଯୁକ୍ତ ସ୍ଥାନ ଦେଖି ଉଦ୍ଧୃତ (quotation) ଦିଅ । ଢଗ ବା ପ୍ରବଚନ ମଧ୍ଯ ଦେଇପାର । ସେଗୁଡ଼ିକୁ ଉଦ୍ଧୃତ ଚିହ୍ନ ଭିତରେ ରଖ ।

(୯) ତୁମର ଭାଷାକୁ ସରଳ କର । ସାଧୁଶବ୍ଦଦ୍ୱାରା ଅଯଥା ଭାରାକ୍ରାନ୍ତ କରନା । 'ଦେଶର ଅବସ୍ଥା ଦେଖି' ସ୍ଥାନରେ 'ଦେଶର ଅବସ୍ଥା ଅବଲୋକନ କରି' ଲେଖିବାଦ୍ୱାରା ଲେଖାର ମୂଲ୍ୟ ବଢ଼ିଯିବ ନାହିଁ । ଗାଉଁଲି ଲୋକମାନଙ୍କ ତୁଣ୍ଡରେ ସରଳ ଗ୍ରାମ୍ୟଭାଷା ଦେଲେ ତାହା ସ୍ୱାଭାବିକ ହେବ ।

(୧୦) ଏକ ସ୍ଥାନରେ ଦୁଇ ବା ତତୋଧିକ ଗୁଣବାଚକ ଶବ୍ଦ ଲେଖିବାକୁ ଥିଲେ ଦୀର୍ଘ ଶବ୍ଦଟିକୁ ପଛକୁ ରଖିଲେ ଭଲ ଶୁଭେ, ଯଥା — ଗର୍ବ ଓ ଅପରିଣାମ-ଦର୍ଶିତା ତାଙ୍କ ପତନର ମୂଳ କାରଣ ।

(୧୧) ଉପଯୁକ୍ତ ସ୍ଥାନ ଦେଖି ଅନୁଚ୍ଛେଦ (paragraph)ରେ ଲେଖାଟିକୁ ବିଭକ୍ତ କର । ଧର ତୁମେ ଏକ ଘରପୋଡ଼ି ବିଷୟରେ ଲେଖୁଛ । ଲୋକମାନେ କିପରି ନିଆଁ ଲିଭାଉଥିଲେ, କି ଦୁର୍ଘଟଣା ତୁମ ଆଖିରେ ପଡ଼ିଲା, ଦମକଳ କେତେବେଳେ ପହଞ୍ଚିଲା ଇତ୍ୟାଦି ବିଭିନ୍ନ କଥାକୁ ଏକାଠି ଫେଣ୍ଟି ନ ଦେଇ ଗୋଟିଏ ଗୋଟିଏ ପାରାରେ ବିଭକ୍ତ କରି ଲେଖ ।

(୧୨) ଚିଠିରେ ସ୍ଥାନ ଓ ତାରିଖ ଦେବାକୁ ଭୁଲନା । ଶେଷରେ ତୁମ ନାମ ଓ ପୂରା ଠିକଣା ଦିଅ । ମନେ ରଖ Bacon ଙ୍କର ସେହି ଉକ୍ତିଟି — 'Writing makes an exact man' Exact ଅର୍ଥ ଠିକ୍ ଯେତିକ ଦରକାର ସେତିକ । ଲେଖାଲେଖିରୁ ଏ ଅଭ୍ୟାସ ଶିଖାଯାଏ ।

(୧୩) ମୂଳ ଲେଖକଙ୍କଠାରୁ ଅନୁମତି ନ ନେଇ ତାଙ୍କ ଲେଖା କୌଣସିଠାରେ ବ୍ୟବହାର କରନାହିଁ କିମ୍ବା ତାର ଅନୁବାଦ ପ୍ରକାଶ କରନାହିଁ । ସଂକ୍ଷିପ୍ତ ଅଂଶ ଉଦ୍ଧାର କରିବା ଆବଶ୍ୟକ ହେଲେ ତାଙ୍କ ନାମ ସେଠାରେ ଲେଖି ତାଙ୍କୁ ସ୍ୱୀକୃତି ଦିଅ । 'କପିରାଇଟ୍' ଆଇନ ଅନୁସାରେ ଜଣେ ଲେଖକଙ୍କ ମୃତ୍ୟୁର ପଚିଶ ବର୍ଷ ଭିତରେ ତାଙ୍କ ଲେଖା ବିନାନୁମତିରେ ବ୍ୟବହାର କରିବା ବେଆଇନ ।

* * *

# ପଦ୍ୟ ରଚନା

ଯେଉଁମାନେ କବିତା ଲେଖନ୍ତି, ସେମାନଙ୍କ ପାଇଁ ଏଠାରେ ଦୁଇ ପଦ କହୁଛୁ ।

(୧) ପ୍ରଥମେ ମନେରଖ, କବିତାର ଭାଷା କୋମଳ ହେବା ଉଚିତ । ସେଥିପାଇଁ ପଦ୍ୟରେ 'ଜନ୍ମଭୂମି'କୁ 'ଜନମଭୂମି', 'ସ୍ୱପ୍ନ'କୁ 'ସପନ', 'ବର୍ଷା'କୁ 'ବରଷା' କରାଯାଏ । କୌଣସି କ୍ଳିଷ୍ଟ ଶବ୍ଦ ଥିଲେ ସେଠାରେ ତାର କୋମଳ ପ୍ରତିଶବ୍ଦ ଦେଇ ରଚନା କର; ଯେପରି ଜଣେ ଅକବି ଲେଖିଥିବା 'ଶୁଷ୍କ କାଷ୍ଠ ତିଷ୍ଠତ୍ୟଗ୍ରେ'କୁ ଜଣେ ସଂସ୍କୃତ କବି ରୂପାନ୍ତରିତ କରି କହିଲେ 'ନୀରସ ତରୁବର ପୁରତୋ ଭାତି' । 'ଅତିଥିଗୃହ' ସ୍ଥାନରେ 'ଅତିଥିଶାଳା' ବା 'ଅତିଥିଭବନ' ପଦ୍ୟପାଇଁ ଅଧିକ ଉପଯୋଗୀ ।

(୨) ପଦ୍ୟର ଅନ୍ୟ ଏକ ବିଶେଷତ୍ୱ ତାର ଛନ୍ଦ । ଏହା ପ୍ରଧାନତଃ ଦୁଇପ୍ରକାର— ମିତାକ୍ଷର ଓ ଅମିତାକ୍ଷର । ଉଦାହରଣ—

ମିତାକ୍ଷର— ନମଇ ନୃସିଂହଚରଣ
ଅନାଦି ପରମ କାରଣ ।

ଅମିତାକ୍ଷର—ଏହି କି ସେ ଆର୍ଯ୍ୟଭୂମି, ଏ ଭୂମିର ସୁତ
ତୁମେକି ଆର୍ଯ୍ୟନାମଧାରୀ ଜଗତେ ?

ମିତାକ୍ଷର ଅଧିକ ପ୍ରଚଳିତ । ଏହାର ଦୁଇଟି ଶୈଳୀ ଅଛି—ଗୋଟିଏ ପାରଂପରିକ, ଅନ୍ୟଟି ମାତ୍ରାବୃତ୍ତ ଛନ୍ଦ । ପାରଂପରିକ ରୀତିରେ ଯୁକ୍ତାକ୍ଷରକୁ ଗୋଟିଏ ଅକ୍ଷର ରୂପେ ଗଣାଯାଏ, ଯଥା—

ଉତ୍କଳ-କମଳା-ବିଳାସ-ଦୀର୍ଘିକା
ମରାଳମାଳିନୀ ନୀଳାମ୍ବୁ ଚାଳିକା ।

କିନ୍ତୁ ମାତ୍ରାବୃତ୍ତ ଛନ୍ଦରେ ଯୁକ୍ତାକ୍ଷରକୁ ସଂସ୍କୃତ ରୀତିରେ ହ୍ରସ୍ୱଦୀର୍ଘ ବିଚାର କରି ଦୁଇଟି ଅକ୍ଷର ରୂପେ ଗଣାଯାଏ । ଯଥା,

ରଞ୍ଜିତ ଅସିଧାରେ, ଶତ୍ରୁ-ରକ୍ତ ଗାରେ,

ଏ ଦୁଇଟି ଛନ୍ଦ ମଧ୍ୟରୁ ଯେ କୌଣସି ଗୋଟିଏ ରୀତିରେ କବିତା ଲେଖିବା ଉଚିତ । କିନ୍ତୁ ଦୁଇଟିକୁ ମିଶାଇ ଖେଚେଡ଼ି କଲେ ଚଳିବ ନାହିଁ ।

ଧର, ମୁଁ ଯଦି ଏପରି ପଦଟିଏ ଲେଖେ :

> ଅଙ୍ଗୁ ମୋହର ଶକ୍ତି ଗଲାଣି ଭାଜି, (୧୨ ଅକ୍ଷର)
> ପଙ୍ଗୁ ହୋଇ ମୁହିଁ ଶୂନ୍ୟକୁ ଗୃହିଁଛି ଆଜି । (୧୪ ଅକ୍ଷର)

ତେବେ ଏହା ଦୋଷଯୁକ୍ତ ରଚନା ହେବ । ପ୍ରଥମ ଧାଡ଼ିରେ ଯେଉଁ ଗୁରୁଲଘୁ ନିୟମ ଅନୁସୃତ ହୋଇଛି, ଦ୍ୱିତୀୟ ଧାଡ଼ିରେ ତାହା ହୋଇନାହିଁ । ଏହା ନିର୍ଦ୍ଦୋଷ ହେବ, ଯଦି ଏହିପରି ଲେଖାଯାଏ :

> ଅଙ୍ଗୁ ମୋହର ଶକ୍ତି ଗଲାଣି ଭାଜି
> ପଙ୍ଗୁ ହୋଇ ମୁଁ ଶୂନ୍ୟେ ଗୃହିଁଛି ଆଜି ।

## ଉପଧା ମିଳନ

କବିତାକୁ ସୁଶ୍ରାବ୍ୟ କରିବାରେ ଉପଧା ମିଳନ ବହୁତ ସାହାଯ୍ୟ କରେ । ଏଥିରେ ଉପାନ୍ତ୍ୟ ବର୍ଣ୍ଣର ମିଳନ ଘଟିଥାଏ । ପ୍ରଥମ ଧାଡ଼ି ଶେଷରେ 'ଆଜି' ଥାଇ ପର ଧାଡ଼ି ଶେଷରେ 'ଖୋଜି' ଥିଲେ ଉପଧା ମିଳନ ହୁଏ ନାହିଁ । 'ଆଜି' ତଳକୁ 'ରାଜି' ବା 'ମାଜି' ରଖିଲେ ଭଲ ଶୁଭେ । ଏହାହିଁ ଉପଧା ମିଳନ; ଯେପରି :

> 'କାଉଡ଼ିଗଣାରେ ପାହିଲା ରାତି
> ଚୋର ନେଇଗଲା କଜଳପାତି ।'

କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ଉପଧା ମିଳାଇ କବିତା ଲେଖିଥିଲେ । ତାଙ୍କ ପରବର୍ତ୍ତୀ କାଳର କବିମାନଙ୍କ ମଧ୍ୟରୁ ସମସ୍ତେ ଏହାକୁ କଡ଼ାକଡ଼ି ଭାବରେ ମାନିନାହାନ୍ତି ସତ, କିନ୍ତୁ ଉପଧାମିଳନ ଯେ କବିତାର ଲାଳିତ୍ୟ ବଢ଼ାଇଦିଏ, ଏଥିରେ ସନ୍ଦେହ ନାହିଁ । କବିତା ଲେଖୁଥିବା ବନ୍ଧୁମାନଙ୍କୁ ଆମର ଅନୁରୋଧ, ସେମାନେ ଏ ଦିଗରେ ଦୃଷ୍ଟି ଦେବେ । ରାଧାନାଥ ଗ୍ରନ୍ଥାବଳୀର ସମସ୍ତ କବିତା ଯଦି ଉପଧା ନିୟମରେ ଲେଖା ହୋଇପାରିଛି, ଏହା ପ୍ରକୃତ କବିମାନଙ୍କ ପକ୍ଷରେ କଷ୍ଟକର ହେବ କାହିଁକି ? ତେବେ ଏଥି ସଙ୍ଗେ ସଙ୍ଗେ ଆମେ କହିରଖୁଛୁ ଯେ ଓଡ଼ିଆ ପଦ୍ୟରେ ଉପଧାମିଳନ ସ୍ପୃହଣୀୟ ହେଲେହେଁ ବାଧ୍ୟତାମୂଳକ ନୁହେଁ ।



# ସାହିତ୍ୟଜ୍ଞାନ ପରୀକ୍ଷା

ସ୍କୁଲ, କଲେଜର ପରୀକ୍ଷାରେ ଯେଉଁ ସାହିତ୍ୟ ପ୍ରଶ୍ନ ପଡ଼େ, ଏ ତାହା ନୁହେଁ । ଏଠାରେ ପାଠ୍ୟ ପୁସ୍ତକରୁ କୌଣସି ପ୍ରଶ୍ନ ଦିଆଯାଇନାହିଁ । ସାଧାରଣ 'କୁଇଜ୍' ପ୍ରତିଯୋଗିତାରେ ଯେପରି ପ୍ରଶ୍ନ ପଡ଼େ, ଏ ସେହି ଜାତୀୟ । ଓଡ଼ିଆ ଭାଷା ଓ ସାହିତ୍ୟକୁ ଆଧାର କରି ମାଧ୍ୟମିକ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ ଏ ପ୍ରଶ୍ନଗୁଡ଼ିକ ପ୍ରସ୍ତୁତ । ପ୍ରଶ୍ନଗୁଡ଼ିକର ଉତ୍ତର ଏହା ଶେଷରେ ଦିଆଯାଇଛି । କ୍ରମିକ ନମ୍ବର ଅନୁସାରେ ଖୋଜିଲେ ସେଗୁଡ଼ିକ ସହଜରେ ମିଳିଯିବ ।

## ପ୍ରଶ୍ନମାଳା

୧ । 'ଗଲାଣି ତ ଗଲା କଥା ରେ ସଙ୍ଗାତ···' —ଏ ସଙ୍ଗୀତର ରଚୟିତା କିଏ ? ତାଙ୍କର ପୂର୍ଣ୍ଣ ନାମ ଲେଖ ।

୨ । ଉପସର୍ଗ ଓ ପ୍ରତ୍ୟୟ ମଧ୍ୟରେ ପ୍ରଧାନ ପ୍ରଭେଦ କଣ ?

୩ । ଓଡ଼ିଶାର ଦୁଇଜଣ ବିପ୍ଳବୀ କବିଙ୍କ ନାମ ଲେଖ ।

୪ । ନିମ୍ନ ତାଲିକାରୁ ଶୁଦ୍ଧ ଶବ୍ଦଗୁଡ଼ିକ ବାଛି ଲେଖ ।
ଯାତାୟତ, ଉତ୍କର୍ଷତା, ଉଜ୍ଜ୍ୱଳମୟ, ବିଦୀର୍ଣ୍ଣ, ବିଷର୍ଣ୍ଣ, କୃତିତ୍ୱ, ଗ୍ରୀଷ୍ମ ।

୫ । ବିପରୀତାର୍ଥବୋଧକ ଶବ୍ଦ ଲେଖ—ପ୍ରତିକୂଳ, ନିବୃତ୍ତି, ପରୋକ୍ଷ, ବନ୍ଧ ।

୬ । କବିମାନେ ସୁନ୍ଦର ଆଖିକୁ ଯାହା ସଙ୍ଗେ ତୁଳନା କରନ୍ତି, ସେଥିରୁ ତିନୋଟି ଲେଖ ।

୭ । ଯାଗ, ଧାର, ଗୁଣ୍ଡା— ଏ ପ୍ରତ୍ୟେକ ଶବ୍ଦର ତିନୋଟି ବିଭିନ୍ନ ଅର୍ଥ ବାକ୍ୟରେ ଦର୍ଶାଅ ।

୮ । ସନ୍ଧିବିଚ୍ଛେଦ କର— ବହ୍ନିଗ୍ରିବଣ, ବିଦ୍ୱେଷଣ, ଜନୈକ, ସ୍ନେହାସ୍ପଦ ।

୯ । ଗୋଟିଏ ଜଣାଶୁଣା ଚଉତିଶାର ପ୍ରଥମ ଧାଡ଼ି ଲେଖ ।

୧୦ । ଗୋଟିଏ ଢଗ ବା ପ୍ରବଚନ ଲେଖ ଯହିଁରେ 'ଘରକୁ' ଶବ୍ଦଟି ଥିବ ।

୧୧ । ଏଗୁଡ଼ିକୁ ଗୋଟିଏ ଗୋଟିଏ ଶବ୍ଦରେ କହ— ଶ୍ରେଷ୍ଠ କୁଳ, ମହତ୍ତ୍ୱର ଭାବ, ଶ୍ରୀ ଯାହାର ଅଛି, ଦାତାଙ୍କ ବଂଶଧର, ପାନ ବିକିବା ଯାହାର ବୃତ୍ତି ।

୧୨ । ଏ ପ୍ରଶ୍ନର ପାଠକୁ ଶୁଦ୍ଧ ଭାଷାରେ ଲେଖ— ମନ୍ତ୍ରୀ ଏହି ନୂଆ ଯୋଜନା ସମ୍ବନ୍ଧୀୟ ସବୁ ତଥ୍ୟ ଉପସ୍ଥାପନ କଲେ ବି ଆଉ କାହିଁକି ବୃଥାରେ ପାଟିତୁଣ୍ଡ କରୁଛ ? ଯାହା କହିବ, ସଂକ୍ଷେପ କରି କହ । ଶୁଣିଲ ତ, କାମ ଆରମ୍ଭ ହେଲେ ସରକାର ଆବଶ୍ୟକୀୟ ଅର୍ଥ ଯୋଗାଇଦେବେ ।

୧୩ । ବାଚ୍ୟ ପରିବର୍ତ୍ତନ କରି ଲେଖ ।

କ) ସେ ମୋ ଧନ ଅପହରଣ କରିଅଛି । ଖ) ମୋତେ ସବୁ ଜଣା ଅଛି ।

ଗ) ମୁଁ କାକୁଡ଼ିତକ ବିକ୍ରୀ କରିଦେଲି ।

୧୪ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ ବାକ୍ୟରେ ବ୍ୟବହାର କର ।
ଅକାଟ୍ୟ, ଲିପ୍ସୁ, ମାଗୁଣି, ଗୁଳା, ଅନାବନା ।

୧୫ । ଏଗୁଡ଼ିକର ବିଶେଷଣ ରୂପ କଣ ହେବ ?

ବର୍ଷ, ମୂଳ, ଉତ୍କର୍ଷ, ଅଭିନୟ, ବିବାହ, ହରିଣ ।

୧୬ । ନିମ୍ନଲିଖିତ ଶବ୍ଦଗୁଡ଼ିକରେ ଯେଉଁ ଳ ଅକ୍ଷର ଥିଲା, ତାହା କାଢ଼ି ନିଆଯାଇଛି । ଳ ଯୋଗ କରି ମୂଳ ଶବ୍ଦଗୁଡ଼ିକୁ ଲେଖ । ଅକ୍ଷର ଓଲଟପାଲଟ କରିପାର ।
ସାରି, ରବି, ଖସ, ମକା, ଗିମ, କତରି ।

୧୭ । ବନ୍ଧନୀ ମଧ୍ୟରୁ ସମାନ ଅର୍ଥବୋଧକ ଶବ୍ଦ ବାଛ ।

କ) ନାରାଜ ( ବିରକ୍ତ, ଅମଙ୍ଗ, ଅସ୍ୱୀକାର )

ଖ) ଦଳପତି ( ମୁରବି, ମାଲିକ, ସର୍ଦ୍ଦାର )

ଗ) ମ୍ରିୟମାଣ ( ହତୋତ୍ସାହ, କର୍ତ୍ତବ୍ୟହୀନ, ବିରସବଦନ )

୧୮ । ନିମ୍ନଲିଖିତ ଶବ୍ଦଗୁଡ଼ିକ ଅଭିଧାନରେ ଯେଉଁ କ୍ରମରେ ଥାଏ, ସେହିଭଳି ଆଗପଛ କରି ଲେଖ ।

କ) ଜ୍ଞାନ, ଜରି, ଘଣ୍ଟା, ଯମୁନା, ଭରତ, ଔଷଧ

ଖ) କ୍ଳାନ୍ତ, କୃମି, କ୍ରମିକ, କୁକୁର, କୌଶଲ୍ୟା, କ୍ଲେଶ

୧୯ । ଚକ, ଅଲତା, ଖପରି, କାଦୁଅ ଓ ଲଉଡ଼ି ସାଧୁଶବ୍ଦ ଲେଖ

୨୦ । ଏହି ଅର୍ଥ ପ୍ରକାଶ କରୁଥିବା ଗୋଟିଏ ଗୋଟିଏ ଶବ୍ଦ ଲେଖ ।

କ) ଯେଉଁଥିରେ ଗାଈଗୋରୁଙ୍କୁ ଅଡ଼ାନ୍ତି ।

ଖ) ରାସ୍ତାରେ ଶଗଡ଼ ଯାଇ ଯାଇ ଯେଉଁ ଚିହ୍ନ ରହିଯାଇଥାଏ ।

ଗ) ବେଣୀ ପକାଯାଇଥିବା ଧାନ କେଣ୍ଡା ।

ଘ) କାଠ ବା ପିତ୍ତଳର ଯେଉଁ ବୈଠା ଉପରେ ଦୀପ ରଖି ଜଳାଯାଏ ।

୨୧ । 'ମୋ ଦେଶ' ପତ୍ରିକାର ପ୍ରତିଷ୍ଠାତା-ସମ୍ପାଦକ କିଏ ?

୨୨ । କାହା ଲେଖାରୁ ଏହି ଉକ୍ତିଗୁଡ଼ିକ ଉଦ୍ଧୃତ ?

(କ) 'ହିଂସା-ପ୍ରଣୋଦିତ ତରବାରିର ଜୟ ଜୟ ନୁହେଁ ।' (ଖ) 'ମଙ୍ଗଳ-ମାଳିନୀ ମାଳାମୁ ଚଳିକା' । (ଗ) 'ସତ କହିବାକୁ କିଆଁ ଡରିବ ?'

୨୩ । ଶୂନ୍ୟ ସ୍ଥାନ ପୂରଣ କର ।

କ) — ଯିବୁ ଯେତିକ, — ପାଇବୁ ସେତିକ ।

ଖ) — କୁଳ କୁଟୁମ୍ବକୁ — , ନ କହିଲେ — ଭାସିଯାଉଛି ।

ଗ) — ଘା' ଦେଖି ହୁଏ ନାହିଁ — ଦେଖାଇହୁଏ ନାହିଁ ।

୨୪ । ବାକ୍ୟରେ ବ୍ୟବହାର କର ।

ଅଳସ (ବିଶେଷ୍ୟ ରୂପେ), ବୃତ୍ତି ଅର୍ଥରେ 'ଉଆ' ପ୍ରତ୍ୟୟାନ୍ତ ଗୋଟିଏ ଶବ୍ଦ ।

୨୫ । ଏଥିମଧ୍ୟରୁ ଗୋଠଖଣ୍ଡିଆ ଶବ୍ଦଟିକୁ ବାଛ ।

ଫେନିଳ, ସର୍ପିଳ, ଛବିଳ, ପଙ୍କିଳ, ସ୍ୱପ୍ନିଳ ।

୨୬ । ଏଥିରେ ଥିବା ତଥ୍ୟଗତ ଭୁଲ୍‌କୁ ସଂଶୋଧନ କରି ଲେଖ ।

କ) 'ନଆଁଖୁଣ୍ଟା'ର ପାଠକ ଗୋଦାବରୀଶ ମିଶ୍ରଙ୍କୁ ଭୁଲିପାରିବେ ନାହିଁ ।

ଖ) 'ଗୃହଲକ୍ଷ୍ମୀ' ପୁସ୍ତକଟି କୁନ୍ତଳାକୁମାରୀଙ୍କର ସାର୍ଥକ ସୃଷ୍ଟି ।

ଗ) 'କୀଚକ ବଧ'ର କବି କୋରାପୁଟର ଅଧିବାସୀ ଥିଲେ ।

୨୭ । ଉପଯୁକ୍ତ ରୂଢ଼ି ଦେଇ ବାକ୍ୟ ଦୁଇଟି ବଦଳାଅ ।

କ) ଚୋରେ ତା ଘରେ ପଶି ସର୍ବସ୍ୱ ନେଇଯାଇଛନ୍ତି ।

ଖ) ମୁଁ ଗୋଟିଏ ଦୁଃଖକୁ ଡରି ଏଠାକୁ ଆସି ଗୁରୁତର ଦୁଃଖରେ ପଡ଼ିଲି ।

୨୮ । ସାହିତ୍ୟ ପାଇଁ ବେସରକାରୀ ସ୍ତରରେ ଦିଆଯାଉଥିବା ଓଡ଼ିଶା ରାଜ୍ୟର ସର୍ବୋଚ୍ଚ ପୁରସ୍କାରଟି କଣ ? ଏହା କିଏ ପ୍ରଦାନ କରନ୍ତି ?

୨୯ । ନିମ୍ନ ପ୍ରବଚନଗୁଡ଼ିକରେ କଣ ଭୁଲ୍ ଅଛି ?

କ) ବରଷିଲା ମେଘ ଗରଜେ ନାହିଁ, କାମୁଡ଼ା କୁକୁର ଭୁକଇ ନାହିଁ ।

ଖ) ଭାଷା ଛାଡ଼ିଲେ ବରଷେ, ଚଷା ଛାଡ଼ିଲେ ପୁରୁଷେ ।

୩୦ । ଉଦାହରଣ ଦେଖି ଅନ୍ୟ କୁଆଗୁଡ଼ିକ କଣ ହେବ କହ ।

ଉଦା : ଯେଉଁ କୁଆ ପାଣିରେ ବୁଡ଼ି ମାଛ ଖାଏ— ପାଣିକୁଆ

(କ) ଯେଉଁ କୁଆର ଗୋଟିଏ ଗୋଡ଼ ଅଛି । (ଖ) ଯେଉଁ କୁଆର ଦାନ୍ତ ନାହିଁ ।

(ଗ) ଯେଉଁ କୁଆ ଆମ୍ବ ଭିତରେ ଥାଏ । (ଘ) ଯେଉଁ କୁଆକୁ ସମସ୍ତେ ଭୟ କରନ୍ତି ।

୩୧ । ଗୋଟିଏ ପଶୁ ବା ପକ୍ଷୀର ନାମ ଦେଇ ଶୂନ୍ୟ ସ୍ଥାନ ପୂରଣ କର ।

କ) ଓଡ଼ିଶାର ଏକ ଜିଲ୍ଲା; — ଭଞ୍ଜ

ଖ) ରାଧିକାଙ୍କ ପିତା ; — ଭାନୁ

ଗ) ଯେଉଁ ଫଳରେ ମୁନିଆ ଆଙ୍କୁଶୀ ଥାଏ; — ନଖୀ

ଘ) ଭାଦ୍ରବ ମାସର ଏକ ଓଷା ; — କୁଣୀ

୩୨ । ପାଞ୍ଚଟି ଶବ୍ଦରୁ ମୂଳ ଅକ୍ଷରଗୁଡ଼ିକ କାଢ଼ିନେବା ପରେ ଏଇଆ ରହିଛି । ସମ୍ପୂର୍ଣ୍ଣ ଶବ୍ଦଗୁଡ଼ିକୁ ଲେଖ ।

—ଶାନ୍ତ, —ସାନ୍ତ, —ଚର, —ଗଜ, —ହଳା

୩୩ । ବନ୍ଧନୀ ମଧ୍ୟରୁ ଠିକ୍ ଅର୍ଥଟିକୁ ବାଛି ଲେଖ ।

କ) ଆରାଧନା (ପ୍ରାର୍ଥନା, ଗୁହାରି, ପୂଜା)

ଖ) ଗର୍ଭାଘର (ଗୁପ୍ତ କକ୍ଷ, ଭଣ୍ଡାରଘର, ସୁଦୃଢ଼ ଘର)

ଗ) ଅବଦାନ (ଖରାପ ଦାନ, ପ୍ରତିଦାନ, ପ୍ରଶଂସନୀୟ କର୍ମ)

୩୪ । 'ଗୋଡ଼'କୁ ମୂଳ କାରଣ ଅର୍ଥରେ ଏବଂ 'ମାଟି'କୁ ଅକର୍ମଣ୍ୟ ଅର୍ଥରେ ବାକ୍ୟରେ ବ୍ୟବହାର କର ।

୩୫ । କେତେକ ଶବ୍ଦରୁ 'ତ' ଅକ୍ଷର କାଢ଼ିନେବାରୁ ଏସବୁଗୁଡ଼ିକ ରହିଗଲା । 'ତ' ଦେଇ ପୂରା ଶବ୍ଦଗୁଡ଼ିକ ଲେଖ ।

ଇର, କାର, ଥାଗ, ରର, ସର, ମସା

୩୬ । ଶୂନ୍ୟ ସ୍ଥାନ ପୂରଣ କର ।

କ) କବିବର ରାଧାନାଥ 'ଉଷା', 'ଚଲିକା' ଓ— ର ରଚୟିତା ।

ଖ) ଫକୀରମୋହନ —, 'ଲଛମା' ଓ 'ମାମୁଁ'ର ଲେଖକ ।

ଗ) — 'କାଳୀଜାଈ' କବିତା ଲେଖିଥିଲେ ।

ଘ) 'ବନ୍ଦୀର ଆତ୍ମକଥା' —ଙ୍କ ଦ୍ୱାରା ରଚିତ ।

୩୭ । ବନ୍ଧନୀ ମଧ୍ୟରୁ ଠିକ୍ ଏହି ଅର୍ଥ ବୁଝାଉଥିବା ଶବ୍ଦଟି ବାଛ ।

କ) ସବୁ ପ୍ରକାର (ସର୍ବଥା, ସର୍ବଦା, ସର୍ବସ୍ୱ)

ଖ) ଯେ ଉପକାର ମାନେ ନାହିଁ (ଅସାଧୁ, କୃତଘ୍ନ, ନିର୍ଦ୍ଦୟ)

ଗ) ଯାହା ପୂର୍ବରୁ ଘଟି ନ ଥିଲା (ଅଭୂତପୂର୍ବ, ଅଦୃଷ୍ଟ, ଅଶ୍ରୁତପୂର୍ବ)

ଘ) ଯାହା ବୁଝିବା ବିଶେଷ କଷ୍ଟକର (ଅବୋଧ, ଜଟିଳ, ଦୁର୍ବୋଧ)

୩୮ । ଗୋଟିଏ ଗୋଟିଏ ଶବ୍ଦରେ ପ୍ରକାଶ କର ।

(କ) ଯାହା ନ୍ୟାୟସଙ୍ଗତ (ଖ) ଯାହା ଉପରେ ପାଦ ରଖି ନିଶୁଣି ଉପରକୁ ଚଢ଼ନ୍ତି (ଗ) ଯେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖେ ।

୩୯ । ନିମ୍ନଲିଖିତ କେଉଁ ଶବ୍ଦରେ 'ଇଆ' ପ୍ରତ୍ୟୟ ଦିଆଯାଇଛି ?

ମାଟିଆ, ତେଲିଆ, ବୁଢିଆ, କଣ୍ଟକିଆ, ମୂନିଆ, ଗଧିଆ, ଲୁଣିଆ, ପଣ୍ଡିଆ ।

୪୦ । 'ପୋଥି' ଓ 'କଉଡ଼ି'ର ଆଉ ପୂର୍ବପରି ପ୍ରଚଳନ ନାହିଁ । କିନ୍ତୁ ଆମ ଭାଷାରେ (ଡଗ, ରୂଢ଼ି ଓ ଲୋକଗୀତରେ) ତାର ଚିହ୍ନ ରହିଯାଇଛି । ଏହାର ଗୋଟିଏ ଗୋଟିଏ ପ୍ରମାଣ ଦିଅ ।

୪୧ । କେଉଁ ଓଡ଼ିଆ ଲେଖକଙ୍କର ଛଦ୍ମନାମ 'ଫଲ୍ଗୁନନ୍ଦ' ?

୪୨ । ଜଗନ୍ନାଥ ଦାସଙ୍କ ଭାଗବତର ଗୋଟିଏ ଧାଡ଼ି କେତେ ଅକ୍ଷର ?

୪୩ । ଓଡ଼ିଆ ସାହିତ୍ୟକ୍ଷେତ୍ରରେ କିଏ 'କବିସମ୍ରାଟ' ଓ କିଏ 'କବିଚନ୍ଦ୍ର' ରୂପେ ପରିଚିତ ?

୪୪ । ଶୂନ୍ୟ ପାଦଗୁଡ଼ିକ ପୂରଣ କର ।
କ)··········, କନ୍ଧ ହାତରେ ଦେଲି ଗୋଦାନ ଟେକି ।
ଖ) ଶବ ପ୍ରତିମା ପ୍ରାୟେ ଦିଶୁ ସୁନ୍ଦର, ··············।

୪୫ । ନିମ୍ନ ଉକ୍ତିରେ ସାତଟି ସଂଖ୍ୟା କେଉଁଠି ଲୁଚି ରହିଛି, ବାହାର କର ।
ସହାସ ତରତର ହେଲି କାହିଁକି ? ଅତି ନିଉଁଛୁଣା ଲୋକଟାଏ ! ମତେ ନ ପଚାରି ଗଛ ଅଧରୁ କାଟିଦେଲି । ଏ କଣ ମତେ ରଗେଇବାର ମତଲବ ନା କଣ ?

୪୬ । ନିମ୍ନ ଶବ୍ଦମାନଙ୍କରୁ ଗୋଟିଏ ଗୋଟିଏ ଅକ୍ଷର କାଢ଼ିନିଆଯାଇଛି । ସେଗୁଡ଼ିକ ପୂରଣ କର ।
ଶି—କା; ହା—କା; ବି—ହିତା; ଚ – ଆ; ନା – ଳକ

୪୭ । ନିମ୍ନଲିଖିତ ସୂକ୍ତି ଓ ପ୍ରବଚନଗୁଡ଼ିକୁ ସଂଶୋଧନ କରି ଲେଖ ।
(କ) ଏ ବର୍ଷ ରୋଗୀ ଭବିଷ୍ୟତକୁ ବଇଦ । (ଖ) ବସି ଖାଇଲେ ସର୍ବସ୍ୱ ସରେ । (ଗ) ବାଉଁଶ ଫଳିଲେ ମରେ, ମଣିଷ ଝୁଲିଲେ ମରେ । (ଘ) କୁଜି ବରଗଡ଼ କାଣୀ ଅସରପା ଉପରକୁ ରଜା ।

୪୮ । ଉଦାହରଣ ଦେଖି ଅନ୍ୟ ସାରଗୁଡ଼ିକ କଣ ହେବ କହ ।
ଉଦା:— ଏକ ଓଡ଼ିଆ ମାସିକ ପତ୍ରିକା— ସଂସାର
(କ) ଝାଡ଼ା ରୋଗ (ଖ) କର୍ପୂର (ଗ) ସରୋବର (ଘ) ଏକ ଜାତିର ମୃଗ ।

୪୯ । 'ଜନ୍ମ ମା ଜନମଭୂମି ପବିତ୍ର ଭାରତଭୂମି·····କବିତାଟିର ଲେଖକ କିଏ ? ଏହା କେଉଁ ବୃତ୍ତରେ ରଚିତ ?

୫୦ । କେଉଁ ଓଡ଼ିଆ ଲେଖକ 'ଜ୍ଞାନପୀଠ ପୁରସ୍କାର' ପାଇଛନ୍ତି ?

୫୧ । ଉତ୍କଳ ସାହିତ୍ୟ ସମାଜର କେନ୍ଦ୍ର କାର୍ଯ୍ୟାଳୟର ନାମ କଣ ?

୫୨ । 'ବନ୍ଦେ ଉତ୍କଳ ଜନନୀ···'ର କବି କିଏ ? ସେ କେଉଁ ମାସିକ ପତ୍ରିକାର ସମ୍ପାଦକ ଥିଲେ ?

୫୩ । କ କହିଲା, "ମୋ ପାଖେ ଥିବା ବହିର ଲେଖକ ଓ ପ୍ରକାଶକ ଭିନ୍ନ ଭିନ୍ନ ବ୍ୟକ୍ତି ।" ଖ କହିଲା, "ମୋ ପାଖେ ଥିବା ବହିର ଲେଖକ ଓ ପ୍ରକାଶକ ଜଣେ ବ୍ୟକ୍ତି ।" କାହା କଥା ଠିକ୍ ?

୫୪ । ଏ ଇଂରାଜୀ ଶବ୍ଦଗୁଡ଼ିକର ଓଡ଼ିଆ ଅନୁବାଦ କର ।

1. Vice-Chancellor, 2. Corporation, 3. Superintendent, 4. Executive Officer, 5. Convocation, 6. Project, 7. Pollution.

୫୫ । ଗୋଟିଏ ଶବ୍ଦରେ କଣ ହେବ ?

ଜାଣିବାକୁ ଇଚ୍ଛୁକ, ପିତାମହଙ୍କ ପିତା, ଯେ ନିଜେ ସୃଷ୍ଟ, ଯେ ଶୋଇଛି ।

୫୬ । କ) ଏ ଚକ୍ଷୁ ଅନ୍ଧ କିଏ କିଣିବ ? ( ନାସ୍ତିବାଚକ କର )

ଖ) ସେ ପଢ଼ିନାହିଁ, ତେଣୁ ପରୀକ୍ଷାରେ ଫେଲ ହେଲା । ( ସରଳ ବାକ୍ୟରେ ପ୍ରକାଶ କର )

ଗ) ସେ ଦରିଦ୍ର ହେଲେହେଁ ଦୟାଶୀଳ । ( ଯୌଗିକ ବାକ୍ୟ କର )

୫୭ । ସେ ଯୌତୁକ ଦାବି କରିବା ଅତ୍ୟନ୍ତ ନିନ୍ଦନୀୟ । —ଏ ବାକ୍ୟର କର୍ତ୍ତା କିଏ ?

୫୮ । ଏଗୁଡ଼ିକରେ କେଉଁ ଧାତୁରୁ କି ପ୍ରତ୍ୟୟ ହୋଇଛି ?

(କ) ଧର୍ତ୍ତବ୍ୟ (ଖ) ସହ୍ୟ (ଗ) ସ୍ମରଣୀୟ (ଘ) ଘାତକ (ଙ) ମୃତ

୫୯ । ଓଡ଼ିଆରେ ସର୍ବବୃହତ୍ ଅଭିଧାନର ନାମ କଣ ? ତାର ସଙ୍କଳୟିତା କିଏ ?

୬୦ । ଶବ୍ଦକୋଷ ଓ ଜ୍ଞାନକୋଷ ମଧ୍ୟରେ ପ୍ରଭେଦ କଣ ?

୬୧ । ଏପରି ଗୋଟିଏ ଶବ୍ଦ ବାଛ ଯାହା ଶୂନ୍ୟ ସ୍ଥାନମାନଙ୍କରେ ବସିଲେ ପୂର୍ଣ୍ଣ ଶବ୍ଦ ତିଆରି ହୋଇଯିବ । ଏକା ଶବ୍ଦ ସବୁ ଶୂନ୍ୟ ସ୍ଥାନରେ ବସିବ ।

···ମାସ ; କୋ···ଟା ; ଆ···ଣ୍ଣ ; ···ସ୍ତ ; ପରି··· ।

୬୨ । କ) ଥରକେ କେବଳ ଗୋଟିଏ ଅକ୍ଷର ବଦଳାଇ ପାଞ୍ଚଥରରେ 'ଗଧିଆ'କୁ 'ପଣ୍ଡିତ' କର ।

ଖ) ଥରକେ କେବଳ ଗୋଟିଏ ଅକ୍ଷର ବଦଳାଇ ତିନି ଥରରେ ପବନକୁ ଅନ୍ତର କର ।

୬୩ । ବନ୍ଧନୀ ମଧ୍ୟରୁ ଠିକ୍ ଅର୍ଥଟିକୁ ବାଛ ।

କ) ଭୂଜାଦଣ୍ଡ ( ହାଲୁକା ଦଣ୍ଡ, ଭୂଜାରେ ତିଆରି ଦଣ୍ଡ, ବାହୁ )

ଖ) ସଂକଳନ ( ସଂଗ୍ରହ, ରଚନା, ସଂଶୋଧନ )

ଗ) ସ୍ୱର୍ଣ୍ଣଚୂଡ଼ ( ମଥାମଣି, ସୁନାଚୂଡ଼, କୁକୁଡ଼ା )

ଘ) ଅବାଞ୍ଛିତ ( ଅନୁଚିତ, କଥିତ, ଅମଙ୍ଗଳ )

୬୪ । ଓଡ଼ିଶାର ପାଞ୍ଚଜଣ ସ୍ୱର୍ଗତ କବି ଓ ଲେଖକଙ୍କ ନାମ କହ, ଯେଉଁମାନଙ୍କ ନାମର ପ୍ରଥମ ଅକ୍ଷର 'ଗୋ' ।

୬୫ । ତିନିଜଣ ଲୋକଙ୍କ ନାମରେ ଥିବା ଅକ୍ଷରଗୁଡ଼ିକୁ ଗୋଳମାଳିଆ ଭାବେ ମିଶାଇ ଦେବାରୁ ଏ ଦଶଟି ଅକ୍ଷର ମିଳିଲା । ନାମ ତିନୋଟି ବାହାର କର ।

ଧ ଗୋ ର ନା ମା ଳ ଥ ମା ପା ବ

୬୬ । ବନ୍ଧନୀ ଭିତରେ ଏପରି ଗୋଟିଏ ଗୋଟିଏ ଶବ୍ଦ ବସାଅ, ଯାହା ପ୍ରଥମ ଶବ୍ଦର ଶେଷ ଅଂଶ ଏବଂ ଦ୍ୱିତୀୟ ଶବ୍ଦର ମୂଳ ଅଂଶ ହେବ ।

ଉଦା : ଦଗା ( ··· ) ସିଲ; ଉତ୍ତର— ବଆ । ( ଦଗାବଆ, ବଆସିଲ )

କ) ପଇ ( ··· ) ସ୍ଥଳୀ;  (ଖ) ବଚ ( ··· ) ପ୍ରଭ ;

ଗ) ଆ ( ··· ) ଣ ;  (ଘ) ଶ ( ··· ) ଜ ;

ଙ) ପ୍ରଜା ( ··· ) ବ୍ରତା

୬୭ । ତଳେ ଦିଆଯାଇଥିବା ବିଷୟ ପଢ଼ି ଲେଖା ଓ ଲେଖକ ମଧ୍ୟରେ ଥିବା ଅମେଳ ସଂଶୋଧନ କର ।

କ) 'ସ୍ନେହ ମୋର ଗାଁଟି'— ଭକ୍ତଚରଣ ଦାସ

ଖ) ମାଗୁଣିର ଶଗଡ଼— ସଚ୍ଚିଦାନନ୍ଦ ରାଉତରାୟ

ଗ) ଯଶୋଦା ବିଳାପ ( ଆରେ ବାବୁ··· ) — ମଧୁସୂଦନ ରାଓ

ଘ) ଜୀବନ ଚିନ୍ତା— ଗୋଦାବରୀଶ ମିଶ୍ର

ଙ) କାଳିଜାଈ – ଗୋଦାବରୀଶ ମହାପାତ୍ର

୬୮ । ରଚନାକୁ ଶ୍ରୀସମ୍ପନ୍ନ କରିବାପାଇଁ ପ୍ରବଚନ, ରୂଢ଼ି, ଉକ୍ତମାଳ ଏବଂ ବଶିଷ୍ଟ କବି ଓ ଲେଖକମାନଙ୍କ ଉକ୍ତି ଉଦ୍ଧାର କରାଯାଏ । ନିମ୍ନଲିଖିତ ରଚନା ଶେଷରେ କି ଉଦ୍ଧୃତି ଦିଆଯାଇପାରେ ଲେଖ ।

କ) ସେ ତ ଘରର ମୁରବି । ଆଜି କିଏ ତାଙ୍କିକି ଦୋଷ ମୁଣ୍ଡେଇବ ? କଥାରେ ଅଛି ପରା··· ।

ଖ) ହଉ, ଗୋଟାଏ ଥର ତ ଖସିଗଲା; ଯାଉ । ଆଉ କଣ ସେ ମୋ ହାବୁଡ଼େ ପଡ଼ିବ ନାହିଁ ? ··· ।

ଗ) ମୁଁ ତାର ଏତେ କାମ କଲି; ଅଥଚ ତା ମକଦ୍ଦମା ଡିଗ୍ରୀ ହେବାପରେ ଆଉ କଣ ସେ ମୋତେ ପଚାରୁଛି ? କଥା ଅଛି ପରା··· ।

ଘ) କାଲି ସକାଳେ ମୂଳ ଲଗୁଥିଲା, ଆଜ କେତେ ଉଚ୍ଚତ ହେଲଣି ଦେଖୁଛ ? ହାତରେ ପରା ଧନ ହୋଇଗଲା । କବି କହିନାହାନ୍ତି··· ?

ଙ) ସେ ଭାବୁଛି ତାକୁ ଏ ହତ୍ୟାକାଣ୍ଡରେ କେହି ସନ୍ଦେହ କରିବେ ନାହିଁ, କିନ୍ତୁ ପ୍ରମାଣ ତ ଦାଣ୍ଡରେ ହାଟରେ ଗଡ଼ଗଡ଼ଉଛି ··· ।

୬୯ । ଏହି ପ୍ରବଚନଗୁଡ଼ିକରେ ଯାହା ଭୁଲ୍ ଅଛି ସଂଶୋଧନ କର ।

କ) ଖାଇ ବସିଲେ ନଈବାଲି ସରେ । ଖ) ଅତି ଲେମ୍ବୁ ଚିପୁଡ଼ିଲେ ପିତା ।

ଗ) ଯାହା ପୁଅକୁ ସାପ କାମୁଡ଼େ, ତା ମା' ପାଳଦଉଡ଼ି ଦେଖିଲେ ଡରେ ।

୭୦ । ଏ ଶବ୍ଦଗୁଡ଼ିକର ଅର୍ଥ କଣ ?

କ୍ଷଣପ୍ରଭା, ଶାଖାମୃଗ, ମରୁପୋତ, ମହୀଲତା, କଳକଣ୍ଠ ।

# ଉତ୍ତରମାଳା

୧ । କବିସୂର୍ଯ୍ୟ ବଳଦେବ ରଥ

୨ । ଉପସର୍ଗ ଧାତୁ ପୂର୍ବରୁ ଏବଂ ପ୍ରତ୍ୟୟ ଧାତୁ ପରେ ବସେ ।

୩ । ସ୍ୱର୍ଗତ ଅନନ୍ତ ପଟ୍ଟନାୟକ ଓ ଶ୍ରୀ ରବି ସିଂ ।

୪ । ବଦାନ୍ୟ, କୃତଜ୍ଞ, ସ୍ୱାମୀ ।

୫ । ଅନୁକୂଳ, ପ୍ରବୃତ୍ତି, ପ୍ରତ୍ୟକ୍ଷ, ସରଳ

୬ । ହରିଣୀର ଆଖି, କଜଳପାତି ଚଢ଼େଇର ଆଖି, ପଦ୍ମ

୭ । ପାଗ — ଆଜ ମେଘୁଆ ପାଗ ହୋଇଛି । ସେ ମୁଣ୍ଡରେ ପାଗ ବାନ୍ଧି ବାନ୍ଧି ଘଡ଼ିଏ ଗଲାଣି । ପିଠା ପାଗଟା ପାଣିଆ ହୋଇଗଲା ।

ଧାର—ନଈ ଧାର ଶୁଖିଲା ପଡ଼ୁଛି । ଏ ଛୁରୀର ଧାର ମୁଣ୍ଡା ହୋଇଗଲାଣି । ମତେ ସପ୍ତାହକ ପାଇଁ ପାଞ୍ଚ ଟଙ୍କା ଧାର ଦେବ କି ?

ଗୁଣ୍ଡା—ମାଆ ଗୁଣ୍ଡା ବଳଦେଲେ ସେ ଭାତ ଖାଏ । ଲଙ୍କା ଗୁଣ୍ଡା ଆଖିରେ ପଡ଼ିଯିବ, ହୁସିଆର । ଅନ୍ଧାର ରାତିରେ ଗୁଣ୍ଡାମାନଙ୍କ ଉପଦ୍ରବ ବେଶି ।

୮ । ବହିଃ+ଆବରଣ; ବାକ୍+ଈଶ; ଜନ+ଏକ; ସ୍ନେହ+ଆସ୍ପଦ

୯ । କହଇ ମନ ଆରେ ମୋ ବୋଲ କର
କଳାଶ୍ରୀମୁଖ ବାରେ ଦେଖିବା ଭଲ ରେ ।
କେତେ ଦିନକୁ ମର୍ମ ବାନ୍ଧିଛୁ ଆଣ
କ ଘେନ ଯିବୁ ତୋର ଛୁଟିଲେ ଘଟ ରେ । ( ମନବୋଧ ଚଉତିଶା ).

୧୦ । ବୁଦ୍ଧି ନ ଦିଶଇ ଘରକୁ, କହି ଦେଉଥାଇ ପରକୁ ।

୧୧ । କୁଳେଇ, ମହତ୍ତ୍ୱ, ଶ୍ରୀମାନ୍ ବା ଶ୍ରୀମତୀ, ଦୈତ୍ୟ, ପାନରୀ

୧୨ । ମନ୍ତ୍ରୀ ଏହି ଯୋଜନା ସମ୍ବନ୍ଧୀୟ ସବୁ ତଥ୍ୟ ଉପସ୍ଥାପନ କରିବାପରେ ଆଉ କାହିଁକି ବୃଥା ପାଟିଭୁଣ୍ଡ କରୁଛ ? ଯାହା କହିବ, ସଂକ୍ଷେପରେ କହ । ଶୁଣିଲ ତ, କାମ ଆରମ୍ଭ ହେଲେ ସରକାର ଆବଶ୍ୟକ ଅର୍ଥ ଯୋଗାଇଦେବେ ।

୧୩ । କ) ମୋ ଧନ ତାହାର ଅପହୃତ ହୋଇଅଛି ।
ଖ) ମୁଁ ସବୁ ଜାଣେ । ଗ) କାକୁଡ଼ିଟକ ମୋ ହାତ ବନ୍ଦୀ ହୋଇଗଲେ ।

୧୪ । ତୁମରେ ଯୁକ୍ତି ଅକାଟ୍ୟ । ବଗଡ଼ଟା ମୂଷାକୁ ଏକ ଲମ୍ଫରେ ଗ୍ରାସିଛି । ମୋର ଠାକୁରଙ୍କଠାରେ ଏତିକିମାତ୍ର ମାଗୁଣି । ଶଗଡ଼ଟି ଠିକ୍ ଗୁଳାରେ ଚାଲିଛି । ବଗିଚାରୁ ଅନାବନା ଗଛ ଓ ଘାସ ଉପାଡ଼ ଦିଅ ।

୧୫ । ବାର୍ଷିକ, ମୌଳିକ, ଉତ୍କୃଷ୍ଟ, ଅଭିମତ, ବିବାହିତ ବା ବୈବାହିକ, ହିତ ।

୧୬ । ରସାଳ, ବିରଳ, ସଳଖ, କାମଳ, ମଙ୍ଗଳ, ଉଜ୍ଜ୍ୱଳ

୧୭ । କ) ଅମଙ୍ଗ ଖ) ସର୍ଦ୍ଦାର ଗ) ବିରସବଦନ

୧୮ । କ) ଔଷଧ, ଘଣ୍ଟା, ଜର, ଜ୍ଞାନ, ଭରତ, ଯମୁନା

ଖ) କୁକୁର, କୃମି, କୌଶଲ୍ୟା, ଷମିକ, କ୍ଲାନ୍ତ, ତୃଷ୍ଣା

୧୯ । ଚଣ୍ଡ, ଅଳକ୍ତକ, ଖର୍ପର, କର୍ଦ୍ଦମ, ଅଲାବୁ ।

୨୦ । କ) ପାଞ୍ଚଣ ଖ) ଗୁଳା ଗ) ମେଣ୍ଢା ଘ) ରୁଖା

୨୧ । ଜାତୀୟକବି ବୀରକିଶୋର ଦାସ

୨୨ । କ) ମଧୁସୂଦନ ରାଓ ଖ) ରାଧାନାଥ ରାୟ ଗ) ରାମକୃଷ୍ଣ ନନ୍ଦ

୨୩ । (କ) ଗଙ୍ଗା, ଫଳ, (ଖ) କହିଲେ, ଲାଜ, କୁଳ, (ଗ) ଅଜାଗା, କ

୨୪ । ମୁଁ ଟିକିଏ ଅଳସ ଭାଙ୍ଗି ସାରିଲେ ଯିବି, ଚାରୁଆ ।

୨୫ । ଛବିଳ ( ଛବି+ଳ ); ଅନ୍ୟ ସବୁଥିରେ 'ଇଲ' ପ୍ରତ୍ୟୟ ହୋଇଛି ।

୨୬ । କ) ନଅାଁଖୁଣ୍ଟାର ସମ୍ପାଦକ ଥିଲେ ଗୋଦାବରୀଶ ମହାପାତ୍ର ।

ଖ) 'ଗୃହଲକ୍ଷ୍ମୀ' ପୁସ୍ତକର ଲେଖକ ଜଗବନ୍ଧୁ ସିଂହ ।

ଗ) କବି ଗଙ୍ଗାଧର ମେହେର ବରପାଲିର ଅଧିବାସୀ ଥିଲେ ।

୨୭ । କ) ସ୍ତ୍ରୀର ତା ଘରେ ପଣି କଳାକନା ବୁଲାଇ ଦେଇଛି ।

ଖ) ମୁଁ ମନ୍ଦିରଗରୁ ଆସି କାନ୍ଥାରରେ ପଡ଼ିଲି ।

୨୮ । ଶାରଳା ପୁରସ୍କାର; ଇଣ୍ଡିଆନ୍ ମେଟାଲ୍ସ ପବ୍ଲିକ ଚାରିଟେବଲ୍ ଟ୍ରଷ୍ଟ ।

୨୯ । କ) ଗରଜିଲା ମେଘ ବରଷେ ନାହିଁ, ଭୁକିଲା କୁକୁର କାମୁଡ଼େ ନାହିଁ ।

ଖ) ଚଷା ହୁଡ଼ିଲେ ବରଷେ, ଘଷା ହୁଡ଼ିଲେ ପୁରୁଷେ ।

୩୦ । କ) ଠେକୁଆ ଖ) ପାକୁଆ ଗ) ଟାକୁଆ ଘ) କୋକୁଆ

୩୧ । କ) ମୟୂରଭଞ୍ଜ ଖ) ବୃଷଭାନୁ ଗ) ବାଘନଖୀ ଘ) ଭାଲୁକୁଣୀ

୩୨ । ପ୍ରଶାନ୍ତ, ମାସାନ୍ତ, ଋତୁର, କାଗଜ, ପୋହଳା

୩୩ । କ) ପୂଜା  ଖ) ଭଣ୍ଡାରଘର  ଗ) ପ୍ରଶଂସନୀୟ କର୍ମ

୩୪ । ଗୋବିନ୍ଦ ଏ କଳର ଗୋଡ଼ ।
ଗାଣ୍ଡି ଜଗି ଜଗି ତା ଜୀବନଟା ମାଟି ହୋଇଗଲା ।

୩୫ । ଇତର, କାତର, ତଥାଗତ, ତରତର, ସତର, ତମସା

୩୬ । କ) 'ମହାଯାତ୍ରା'  ଖ) 'ଛମାଣ ଆଠଗୁଣ୍ଠ'  ଗ) ପଣ୍ଡିତ ଗୋଦାବରୀଶ ମିଶ୍ର
ଘ) ଗୋପବନ୍ଧୁ ଦାସ

୩୭ । କ) ସର୍ବଥା  ଖ) କୃତଘ୍ନ  ଗ) ଅଭୂତପୂର୍ବ  ଘ) ଦୁର୍ବୋଧ

୩୮ । କ) ନ୍ୟାଯ୍ୟ  ଖ) ଫଳ  ଗ) ସମଦର୍ଶୀ

୩୯ । ତେଲିଆ, କଣ୍ଟକିଆ, ମୁନିଆ, ଲୁଣିଆ, ସତ୍ତିଆ ।

୪୦ । ତା ପୋଥିରେ ଡୋର ବନ୍ଧା ହେଲାଣି । ( ସେ ଆଉ ପଢୁନାହାଁନ୍ତି ) ।
ମୋ ହାତରେ କାଣୀ କଉଡ଼ିଟିଏ ବି ନାହିଁ । ( ମୁଁ ନିଃସ୍ୱ ) ।

୪୧ । ଶ୍ରୀ ରାମଚନ୍ଦ୍ର ମିଶ୍ର

୪୨ । ନଅ ଅକ୍ଷର

୪୩ । କବିସୂର୍ଯ୍ୟ— ବଳଦେବ ରଥ; କବିଚନ୍ଦ୍ର—କାଳିଚରଣ ପଟ୍ଟନାୟକ

୪୪ । କ) ଅନ୍ଧଦେଶକୁ ଗଲା ଦର୍ପଣ ବିକି ।
ଖ) ଚାଳି ଭିତରେ ଦେଖି କି ନାରଖାର ।

୪୫ । ସତର, ତିନି, ଚୌଦ, ଛଅ, ଏକ, ତେର, ବାର

୪୬ । ଶିବିକା, ବାଲୁକା, ବିବାହିତା, ଚଢ଼ିଆ, ନାବାଳକ

୪୭ । କ) 'ଭବିଷ୍ୟତକୁ' ସ୍ଥାନରେ 'ଆରବର୍ଷକୁ' ହେବ । ଖ) 'ସର୍ବସ୍ୱ' ସ୍ଥାନରେ
'ନଷ୍ଟବାଳି' ହେବ ।  ଗ) 'ଭୁଲିଲେ' ସ୍ଥାନରେ 'ବୁଲିଲେ' ଓ ଘ) କାର୍ଣ୍ଣି
ବରାଡ଼ କୁଜା ଅସରପା ଉପରକୁ ରଜା ହେବ ।

୪୮ । ଅନ୍ତସାର, ଘନସାର, କାସାର, କୃଷ୍ଣସାର

୪୯ । ମଧୁସୂଦନ ରାଓ ; ଶ୍ଳେଷ ବୃତ୍ତରେ

୫୦ । ଶ୍ରୀ ଗୋପୀନାଥ ମହାନ୍ତି ଓ ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

୫୧ । ଶ୍ରୀରାମଚନ୍ଦ୍ର ଭବନ, କଟକ

୫୨ । କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର । ସେ 'ଡଗର' ପତ୍ରିକାର ସମ୍ପାଦକ ଥିଲେ ।

୫୩ । ଦୁହିଁଙ୍କ ଉତ୍ତର ଠିକ୍ ।

୫୪ । (୧) କୁଳପତି (୨) ନିଗମ (୩) ତତ୍ତ୍ୱାବଧାରକ ବା ଅଧୀକ୍ଷକ (୪) ନିର୍ବାହୀ ଅଧିକାରୀ (୫) ସମାବର୍ତ୍ତନ ଉତ୍ସବ (୬) ପ୍ରକଳ୍ପ (୭) ପ୍ରଦୂଷଣ ।

୫୫ । ଜିଜ୍ଞାସୁ, ପ୍ରପିତାମହ, ସ୍ୱୟମ୍ଭୂ, ସୁପ୍ତ ବା ନିଦ୍ରିତ

୫୬ । କ) ଏ ପଦ୍ମ ଆମ୍ଭ କେହି ଜାଣିବେ ନାହିଁ ।
ଖ) ସେ ପଢ଼ି ନ ଥିବାରୁ ପରୀକ୍ଷାରେ ଫେଲ୍ ହେଲା ।
ଗ) ସେ ଦରିଦ୍ର ସତ, କିନ୍ତୁ ଦୟାଶୀଳ ।

୫୭ । 'ସେ ଯୌତୁକ ଦାବି କରିବା'— କର୍ତ୍ତା

୫୮ । (କ) ଧୃ+ତବ୍ୟ (ଖ) ସହ+ଯ (ଗ) ସୁ+ଅମୟ (ଘ) ହନ୍+ଅକ (ଙ) ମୃ+ତ

୫୯ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ; ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ।

୬୦ । ଶବ୍ଦକୋଷର ଅର୍ଥ ଅଭିଧାନ । ଏଥିରେ ଶବ୍ଦଗୁଡ଼ିକର ଅର୍ଥ ଥାଏ । ଜ୍ଞାନକୋଷକୁ ଇଂରାଜୀରେ 'ଏନ୍‌ସାଇକ୍ଲୋପିଡ଼ିଆ, (encyclopaedia) କହନ୍ତି । ଏଥିରେ ବିଶିଷ୍ଟ ବ୍ୟକ୍ତି, ପ୍ରସିଦ୍ଧ ସ୍ଥାନ ଓ ଜ୍ଞାତବ୍ୟ ବିଷୟଗୁଡ଼ିକର ସଂକ୍ଷିପ୍ତ ପରିଚୟ ଦିଆ ହୋଇଥାଏ ।

୬୧ । ମଳ (ମଳମାସ, କୋମଳତା, ଆମଳକୀ, ମଳୟ, ପରିମଳ)

୬୨ । (କ) ଗଧିଆ—ମାଧିଆ—ମାଣ୍ଡିଆ—ଖଣ୍ଡିଆ—ଖଣ୍ଡିତ—ପଣ୍ଡିତ ।
(ଖ) ପବନ—ପତନ—ପତର—ଅତର ।

୬୩ । କ – ନିକାଞ୍ଚ; ଖ— ସଂଗ୍ରହ; ଗ— କୁକୁଡ଼ା; ଘ— ଅନୁଚିତ ।

୬୪ । ଗୋପାଳକୃଷ୍ଣ ପଟ୍ଟନାୟକ, ଗୋପାଳଚନ୍ଦ୍ର ପ୍ରହରାଜ, ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର ।

୬୫ । ମାଧବ, ଗୋପାଳ, ରମାନାଥ

୬୬ । କ) ପାକ ;  ଖ) କ୍ଷଣ;  ଗ) କର ;  ଘ) ବର  ଙ) ପତ୍ର

୬୭ । ଶ୍ରେଷ୍ଠ ମୋର ଗାଁଟି— ସଚ୍ଚିଦାନନ୍ଦ ରାଉତରାୟ
ମାଗୁଣିର ଶଗଡ଼— ଗୋଦାବରୀଶ ମହାପାତ୍ର
ଯଶୋଦା ବିଳାପ— ଭକ୍ତଚରଣ ଦାସ
ଜୀବନ-ଚିନ୍ତା— ମଧୁସୂଦନ ରାଓ
କାଳଜାଙ୍ଘ— ଗୋଦାବରୀଶ ମିଶ୍ର

୬୮ । କ) ଢେଙ୍ଗା ମୁଣ୍ଡରେ ଠେଙ୍ଗା ।   ଖ) ଏକା ମାଘକେ କଣ ଶୀତ ଯାଉଛି !
ଗ) ବିଭା ସରିଲେ ବେଦୀ ମୁହଁ ପୋଡ଼ । ଘ) 'ଅତି ସମ୍ପଦ ବାବୁ ମହା ବିଷମ' ।  ଙ) 'ଲୁଚିଛି ନା ଗୋଡ଼ ଦିଓଟି ଦିଶୁଛି' ।

୬୯ । କ) ବସି ଖାଇଲେ ନଈବାଲି ସରେ । ଖ) ଲେମ୍ବୁ ଅତି ଚିପୁଡ଼ିଲେ ପିତା ।
ଗ) ଯାହା ପୁଅକୁ ସାପ କାମୁଡ଼େ, ସେ ଡାଳ ଦଉଡ଼ି ଦେଖିଲେ ଡରେ ।

୭୦ । କ୍ଷଣପ୍ରଭା—ବିଜୁଳି,  ଶାଖାମୃଗ— ମାଙ୍କଡ଼,  ମରୁପୋତ— ଓଟ,
ମଲ୍ଲୀଲତା – ଜାଆ,  କଳକଣ୍ଠ— କୋଇଲି ।



# କେତେକ ସାଧାରଣ ଉକ୍ତି

## ଈଶ୍ୱର

* ତୁ ନାଥ ପରମ ଦୟାଳୁ । ଦୁଷ୍ଟ ନିବାରି ସନ୍ଥ ପାଳୁ ॥ (ଭାଗବତ)
* ବ୍ରହ୍ମାଣ୍ଡ ମାଳ ମାଳ ହୋଇ । ତୋ ଲୋମ କୂପେ ବିରାଜଇ ॥
* ସକଳ ଘଟେ ନାରାୟଣ । ବସନ୍ତି ଅନାଦି କାରଣ ॥ (ଭାଗବତ)

## ଧର୍ମ

* ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ । (ଗୀତା)

* ଧର୍ମ ଏକା ସିନା ମହତପଣିଆ
ଆଜ ବଡ଼ ପଣ ଅଢ଼େଇଦିନିଆ ।
ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର-ବାରିଧି । (ରାଧାନାଥ)

* ଧନ ଅର୍ଜନେ ଧର୍ମ କର । ଧର୍ମେ ପ୍ରାପତ ନରହର ।

## ମାତୃଭୂମି ଓ ମାତୃଭାଷା

* ମାତୃଭୂମି ମାତୃଭାଷା ଉଭୟେ ଜନନୀ,
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ । (ମ. ରାଓ)

* ମାତୃଭୂମି ମାତୃ— ଭାଷାରେ ମମତା
ଯା ହୃଦେ ଜନମିନାହିଁ,
ତାକୁ ଯେବେ ଜ୍ଞାନୀ - ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ? (ମେହେର)

* ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।

ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ । (ଗୋପବନ୍ଧୁ)

✱ ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।

※ ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା । (ମେହେର)

## ସୁଖ

※ ସୁଖ ବୋଲି ଯାହା ଜନନେନେ ଦିଶେ
ହାତେ ଆସେ ହାତୁଁ ପଡ଼ିବାପାଇଁ ସେ । (ରାଧାନାଥ)

## ସାହସ ଓ ବୀରତ୍ୱ

※ କାତରତା ଦିନା କାପୁରୁଷପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେବେ ପରାଣ ଆତଙ୍କେ । (ଗୋପବନ୍ଧୁ)

※ ମନ୍ତ୍ରର ସାଧନ ଶରୀରପାତନ ବେନିରୁ ଏକ
ହେଲେ ବୀରଙ୍କର ଛୁଟଇ କି କେବେ ସଂସାରୁ ଟେକ ? ( ରାଧାନାଥ )

## କର୍ମ, ଶ୍ରମ ଓ ଆଲସ୍ୟ

※ ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ,
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ । (ଗୋପବନ୍ଧୁ)

※ ଅଳସ ଲୋକର ପାଶକୁ ନ ପଶଇ ସଂପଦ
ମଧୁ ଆସି ମୁଖେ ନ ପଶେ ଶୋଇଥିଲେ ଷଟ୍‌ପଦ । (ମେହେର)

※ ନରକୁ ଦଇବ ଜଗତେ ଅଛୁ କିସ ନ ଦେଇ
ଦ୍ୱାରେ ଦ୍ୱାରେ ବୁଲି ତଥାପି ବୋଲେ ସେ 'ଦେହି ଦେହି' । (ମେହେର)

※ ପରିଶ୍ରମ ମନୁଷ୍ୟର ସର୍ବଶ୍ରେଷ୍ଠ ପ୍ରଶଂସା । ( ମ. ଗାଁ )

## ମନ, ଚରିତ୍ର ଓ ସ୍ୱଭାବ

❊ ଏ ମନ ଖୋଜୁଥାଇ ଯାହା । କାଳେ ପ୍ରାପତ ହୁଏ ତାହା ॥

❊ ମନ ମୋହର ନିଜ ଗୁରୁ । ଉଦ୍ଧବ କେତେ ତୁ ପଗୁରୁ ॥ (ଭା.)

❊ ଯାହାର ଯେମନ୍ତ ସ୍ୱଭାବ । ଗୁରୁବଚନେ କି କରିବ ॥ (ଭା.)

❊ ନିଜେ ସେ ନିଜର ବନ୍ଧୁ ଜିତେନ୍ଦ୍ରିୟ ଅଟଇ ଯେ ଜନ,
ନିଜେ ସେ ନିଜର ବୈରୀ ରିପୁଙ୍କୁ ଯେ ନ କରେ ଦମନ । ( ମ. ଗୀତା )

✱ ଧନ ନ ଥିଲେ ଭାବନା ନାହିଁ ମନରେ ଅଛି ବଳ
ମନର ବଳେ କରିପାରେ ମୁଁ ଦୁନିଆ ଟଳମଳ । ( ରାମକୃଷ୍ଣ )

❊ ଥିଲେ ଥାଉ ପଛେ ଗୁଣ ହଜାର, ଚରିତ୍ର ନ ଥିଲେ ସବୁ ଅସାର ।

## ସତ୍ୟ

❊ ସତ କହିବାକୁ କିଆଁ ଡରିବ
ସତ କହି ପଛେ ମଲେ ମରିବ । ( ରାମକୃଷ୍ଣ )

## ସ୍ୱାର୍ଥ, ପରୋପକାର

❊ ଚିହ୍ନିବାକୁ ଶିଖିନାହିଁ ପର ମନ,
ସେ କି କେବେ ପ୍ରଭୁପଣକୁ ଭାଜନ ? (ରାଧାନାଥ)

❊ କାପୁରୁଷ ପରି ମରିବା ଜଗତେ
ନୁହେଁ ନର-ପଉରୁଷ,
ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ । (ଗୋପବନ୍ଧୁ)

❊ ଜାତି-ନନ୍ଦଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ
ଟାଣେ କରେ ଗାଡ଼ି ଧାନାର ଚୋବଡ଼ା
ଘୋଡ଼ାମୁହେଁ ବନ୍ଧା ଥିଲେ ? (ମଧୁବାବୁ)

## ଜ୍ଞାନ

※ ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ । ଦେଖି ସନ୍ତୋଷ ଭଗବାନ ॥ (ସ୍ୱା.)

※ ନୁହେଁ ବୃଦ୍ଧ ସେହି ଜନ ଶୁକ୍ଳ କେଶ ଅଟେ ଯାର ଶିର,
ଯୌବନେ ଯେ ଜ୍ଞାନେ ରତ ଦେବେ ତାଙ୍କୁ ବୋଲନ୍ତି ସ୍ଥବିର । (ମ. ଗ୍ରନ୍ଥ)

## ସୌନ୍ଦର୍ଯ୍ୟ

※ ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖୁଥିଲେ ନୂଆ ଦିଶୁଥାଇ । (ରାଧାନାଥ)

## ଧନ

※ ଅତି ସମ୍ପଦ ବାକୁ ମହା ବିଷମ । (ରାଧାନାଥ)

※ ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୁହେଁ ସୁଖେ ପ୍ରୟୋଜନ ।

※ ସମ୍ପଦବେଳେ ସର୍ବେ ସଖା । ବିପଦେ ନ ଦିଅନ୍ତି ଦେଖା । (ସ୍ୱା.)

※ ପୁଅ ଯେବେ ଯୋଗ୍ୟ ହୁଏ ଧନ କାହାପାଇଁ ସଞ୍ଚୁ ?
ପୁଅ ଯେବେ ଅଯୋଗ୍ୟ ହୁଏ ଧନ କାହାପାଇଁ ସଞ୍ଚୁ ?

## ଭାଗ୍ୟ

※ ଆଜ ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର । (ମ. ଗ୍ରନ୍ଥ)

※ ଶକ୍ତି ନାହିଁ ବହି କାହାର ଜଗତେ
ନିୟତି ନେବ ନିଜ ଇଚ୍ଛାମତେ । (ରାଧାନାଥ)

## ଜନ୍ମମରଣ

※ କେହି ରହିନାହିଁ ରହିବ ନାହିଁଟି
ଭବ ରଙ୍ଗଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ । (ରାଧାନାଥ)

# ବିବିଧ

✽ ଶ୍ରୋତା ବକତା କେହି ନାହିଁ । ରୋଦନ କରୁ କାହିଁପାଇଁ ॥ (ଭା.)

✽ କେ ଅବା ଅଛି କେଉଁ ମତେ । ତାହା ମୁଁ ଜାଣିବ କେମନ୍ତେ ॥ (ଭା.)

✽ ମରଣକାଳେ ନିଦ୍ରା ଗଲେ । ଯମ କି ଛାଡ଼ିଦେବ ଭଲେ ॥ (ଭା.)

✽ ମୋତି ମୂଲ୍ୟ କାହୁଁ ଜାଣିବ ଶବର,
ମୋତି ଫିଙ୍ଗି କରେ ଗୁଞ୍ଜାକୁ ଆଦର । (ରାଧାନାଥ)

✽ କଣ୍ଟକେ ଜଡ଼ିତ ନୁହେଁ ଖାଲି ବନ,
ଫୁଟେ ସୁଦ୍ଧା ତହିଁ ସୁରଭି ସୁମନ । (ନୀଳକଣ୍ଠ)

✽ ଧିକ ସେ ସଂସାର ପ୍ରବଳର ଯହିଁ
ସବୁ କଥାରେ ସୁଯୋଗ,
ଦୁର୍ବଳର ଯହିଁ ଲଲାଟ ଲିଖନ
ନୀରବେ ଲାଞ୍ଛନା ଭୋଗ । (ରାଧାନାଥ)

✽ ସର୍ପ ସମାନ ଭୟଙ୍କର । ଦୁର୍ଜନ ଜନେ ପରିହର ॥

✽ ବୁଝି ବିଚାରି କାର୍ଯ୍ୟ କଲେ । ପ୍ରମାଦ ନ ପଡ଼ଇ ଭଲେ ॥

✽ ଦଣ୍ଡିବା ଶକ୍ତି ଯାର ଥାଇ । ସେ ପୁଣି କ୍ଷମା ଆଚରଇ ॥

✽ ଜୀବର ଭଲ ମନ୍ଦ ବାଣୀ । ମରଣକାଳେ ତାହା ଜାଣି ॥

✽ ଚିର ହାହାମୟ ଏ ଛାର ଜୀବନ
ଜୀବନ ନୁହଇ ଜୀବନ୍ତ ମରଣ । (ରାଧାନାଥ)

✽ ଚିରି କନାରେ ମୋତିବର । ମୂଲ୍ୟ ସେ ନ ତୁଟେ ତାହାର ॥

✽ ଆପଣା ହସ୍ତେ ଜିହ୍ୱା ଛେଦ । କେ ତାର ଅଛି ପ୍ରତିବାଦ ॥

✽ ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ-ପ୍ରୀତି-ରକ୍ତବିନ୍ଦୁ । (ଗୋପବନ୍ଧୁ)



# କେତୋଟି ରୁଢ଼ି ଓ ପ୍ରବଚନର

## ଅର୍ଥ ଏବଂ ମୂଳ କଥା

**ଅକାଳ କୁଷ୍ମାଣ୍ଡ**— ଅଋତୁରେ ଫଳବା କୁଷ୍ମାଣ୍ଡ ଅର୍ଥାତ୍ ପାଣିକଖାରୁ ଅଶୁଭ-ସୂଚକ ବୋଲି ପ୍ରବାଦ ଅଛି । କଥିତ ଅଛି, ଗର୍ଭମାସ ପୂର୍ଣ୍ଣ ନ ହେଉଣୁ ଗାନ୍ଧାରୀ ପାଣିକଖାରୁ ପରି ଏକ ମାଂସପିଣ୍ଡ ପ୍ରସବ କରିଥିଲେ ଏବଂ ସେଥିରୁ ଦୁର୍ଯ୍ୟୋଧନ, ଦୁଃଶାସନ ଆଦି ଶହେ ଭାଇ ଜାତ ହେଲେ । ସେମାନଙ୍କ ଦୁର୍ବୁଦ୍ଧିରୁ କୁରୁବଂଶ ଧ୍ୱଂସ ହେଲା । ଏଣୁ କୁଳାଙ୍ଗାର ସନ୍ତାନଙ୍କୁ ଗାଳି ଦିଆଯାଏ 'ଅକାଳକୁଷ୍ମାଣ୍ଡ' ।

**ଅଣଚାଶ (ପବନ) ଉଠିବା**– ମୃତ୍ୟୁ ପୂର୍ବ ଖର ନିଃଶ୍ୱାସ ପ୍ରତି ଏହା ପ୍ରୟୋଗ କରାଯାଏ । ପବନ ଯେତେବେଳେ କାଶ୍ୟପପତ୍ନୀ ଅଦିତିଙ୍କ ଗର୍ଭରେ ଥିଲେ, ସେତେବେଳେ ଅଦିତିଙ୍କ ସପତ୍ନୀ ଦିତି ଈର୍ଷାବଶତଃ ପୁଅ ଇନ୍ଦ୍ରଙ୍କୁ ପ୍ରବର୍ତ୍ତାଇଲେ ତାଙ୍କ ଗର୍ଭ ନଷ୍ଟ କରିଦେବା ପାଇଁ । ତେଣୁ ଇନ୍ଦ୍ର ଅଦିତିଙ୍କ ଗର୍ଭରେ ପଶି ଭ୍ରୂଣକୁ ସାତଖଣ୍ଡ କରି କାଟିଦେଲେ । ମାତ୍ର ସେ ନ ମରିବାରୁ ପ୍ରତି ଖଣ୍ଡକୁ ପୁଣି ସାତଖଣ୍ଡ କଲେ । ତଥାପି ଭ୍ରୂଣ ମଲା ନାହିଁ ଏବଂ ପବନ ୪୯ ରୂପ ଧରି ଜନ୍ମ ହେଲେ । ଲୋକଙ୍କ ଠାରେ ବିଶ୍ୱାସ, ମୃତ୍ୟୁ କାଳରେ ପବନ ଏହି ଅଣଚାଶ ମୂର୍ତ୍ତି ଧରି ପିଣ୍ଡରୁ ବାହାରିଯାଏ ।

**ଅଣସର ଗୁଳୁଗୁଳ**—ଦେବସ୍ନାନ ପୂର୍ଣ୍ଣିମାପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ସ୍ନାନମଣ୍ଡପରୁ ନେଇ ଗୋଟିଏ ଗୁମୁଟି ଘରେ ରଖାଯାଏ । ନେତ୍ରୋତ୍ସବ ପର୍ଯ୍ୟନ୍ତ ତିନି ଠାକୁର ସେଠାରେ ରହନ୍ତି । ଚିତ୍ରକାରମାନେ ସେତେବେଳେ ତାଙ୍କ ଦେହରେ ରଙ୍ଗ ଦେଇ ଚିତ୍ର କରନ୍ତି । ତାଙ୍କୁ ସେତେବେଳେ ଦର୍ଶନ କରିବାର ଅବସର ନ ଥାଏ ବୋଲି ସେହି ସମୟକୁ 'ଅନବସର' କହନ୍ତି । ଅନବସରରୁ 'ଅଣସର' ହୋଇଅଛି । ସେତେବେଳେ ଯେଉଁ ଅସହ୍ୟ ଗରମ ହୁଏ, ତାକୁ 'ଅଣସର ଗୁଳୁଗୁଳ' କୁହାଯାଏ ।

**କଂସାରି ଘରର ପାରା**— କଂସାରି ଘରେ ଥିବା ପୋଷା ପାରା ସବୁବେଳେ କଂସାବାସନ ତିଆରି ଶବ୍ଦ ଶୁଣି ଶୁଣି ଅଭ୍ୟସ୍ତ ହୋଇଥାଏ । ତେଣୁ ସେ ସାମାନ୍ୟ

କୁଲାବାଡ଼ିଆ ଶବ୍ଦକୁ ଡରେ ନାହିଁ । ସେହିପରି, ଗାଳିମନ୍ଦ, ଚୋଡ଼ମାଡ଼ ସହିବାରେ ଯେ ଅଭ୍ୟସ୍ତ, ସେ ସାମାନ୍ୟ ଧମକଚମକକୁ ଖାତର କରେ ନାହିଁ । ପୂରା କଥାଟି ହେଲା— 'କଂସାରି ଘରର ପାରା, ତାକୁ କୁଲା ଡାଉଁ ଡାଉଁ ଡର' ।

**କାକତାଳୀୟ ନ୍ୟାୟ**— ପାଚିଲା ତାଳ ଉପରେ କୁଆଟାଏ ଉଡ଼ିଆସି ବସି ପଡ଼ିବାରୁ ତାଳଟା ଝଡ଼ିପଡ଼ିଲା । କିନ୍ତୁ କୁଆ ଭାବିଲା ସେ ତାଳଟାକୁ ଝଡ଼ାଇଛି । କାର୍ଯ୍ୟକାରଣ ସମ୍ବନ୍ଧ ନ ଥାଇ ଦୁଇଟି ଘଟଣା ଏକ ସମୟରେ ଘଟିଲେ କେହି କେହି କହନ୍ତି ଗୋଟିକ ଯୋଗୁଁ ଅନ୍ୟଟି ଘଟିଛି ।

**କାଠିକର ପାଠ**— ୧ ସଂଖ୍ୟାରେ ୨୨ଟି ଶୂନ୍ୟ ଦେଲେ ଯେଉଁ ରାଶି ହୁଏ, ତାକୁ ଏକ 'କାଠି' ବୋଲି ଗଣନା କରାଯାଏ ( ଯେପରି ଲକ୍ଷ, କୋଟି, ବୃନ୍ଦ, ଖର୍ବ ଇତ୍ୟାଦି ) । ଏହି ସର୍ବୋଚ୍ଚ ରାଶି ବିଶିଷ୍ଟ ସଂଖ୍ୟାର ଗୁଣନ, ମିଶାଣ ଆଦି ଅଙ୍କ କଷିବା ଅତି କଷ୍ଟସାଧ୍ୟ । ତେଣୁ ଏପରି ତୁଳନାତ୍ମକ ଉକ୍ତି ଅତି କଷ୍ଟକର କାମ ପ୍ରତି ପ୍ରୟୋଗ କରାଯାଏ । ଯଥା—ଦିଲ୍ଲୀ ଯାଇ ଏତେ କାମ କରିବା ମୋ ପକ୍ଷରେ କାଠିକର ପାଠ ।

**ଖଟ୍ୱାଙ୍ଗ ପୁରାଣ**— ଗୋଟିଏ ଗଳ୍ପରୁ ଏ କଥାଟି ଆସିଛି । ଥରେ ରାଜା ଜଣେ ବ୍ରାହ୍ମଣଙ୍କୁ ଗୋଟିଏ ନୂଆ ପୁରାଣ ରଚନା କରିବାକୁ କହିଲେ । ବ୍ରାହ୍ମଣ ଭାବି ଭାବି ପୁରାଣର ବିଷୟବସ୍ତୁ ଠିକ୍ କରି ନ ପାରିବାରୁ ରାଜାଙ୍କୁ ଠକିବାପାଇଁ ଗୋଟିଏ ଭଙ୍ଗା ଖଟଖଟ୍ରା ଆଣିଲେ ଏବଂ ସେଥିରେ କନା ଗୁଡ଼େଇ ତାକୁ ଖୁବ୍ ମୋଟ କରିଦେଲେ । ତାପରେ ରାଜାଙ୍କୁ ସେଇଟି ଦେଇ କହିଲେ, "ଏହାର ନାମ 'ଖଟ୍ୱାଙ୍ଗ ପୁରାଣ' । ମୋ ମୃତ୍ୟୁପରେ ଏହାକୁ ଫିଟାଇଲେ ଏହାର ମହତ୍ତ୍ୱ ଜଣା ପଡ଼ିବ । ରାଜା ବିଶ୍ୱାସ କରି ତାକୁ ରଖିଦେଲେ ଏବଂ ବ୍ରାହ୍ମଣଙ୍କ ମୃତ୍ୟୁପରେ ତାକୁ ଫିଟାଇ ଖଟଖଟ୍ରାଟି ପାଇଲେ । ତେଣୁ କୌଣସି ମୂଲ୍ୟହୀନ ଦୀର୍ଘ ବର୍ଣ୍ଣନାକୁ ଏହି ଆଖ୍ୟା ଦିଆଯାଏ ।

**ଗୁରୁଚଣ୍ଡାଳ ଦୋଷ**— ଗୁରୁ ଓ ଚଣ୍ଡାଳ ଏକ ଆସନରେ ବସିବା ଦୋଷାବହ । ସେହିପରି ସାଧୁଶବ୍ଦ ଓ ଗାଉଁଲି ଶବ୍ଦର ଏକତ୍ର ପ୍ରୟୋଗ ସାହିତ୍ୟିକ ଭାଷାରେ ଦୋଷ ବୋଲି ଗଣାଯାଏ । 'ତରୁତୃଣ' ସ୍ଥାନରେ 'ତରୁଘାସ' ବା 'ଗଛତୃଣ' ଲେଖିଲେ ଏହି ଦୋଷ ଘଟେ ।

**ଘଣ୍ଟ ଘୋଡ଼ାଇ ରଖିବା**— ଗୋଟିଏ ପୌରାଣିକ ଘଟଣାରୁ ଏ ଉକ୍ତିଟି ଗୃହୀତ । କୁରୁକ୍ଷେତ୍ରରେ ଗୋଟିଏ ଭରତଆ ପକ୍ଷୀ ଅଣ୍ଡା ଦେଇଥିଲା । ମହାଭାରତର ଯୁଦ୍ଧବେଳେ କାଳେ ସେଗୁଡ଼ିକ ନଷ୍ଟ ହୋଇଯିବ, ଏଇ ଭୟରେ ସେ ମହାପ୍ରଭୁଙ୍କୁ ଡାକିଲା । ପ୍ରବାଦ ଅଛି, ଯୁଦ୍ଧବେଳେ ଅଶ୍ୱତ୍ଥାମା ହାତୀ ବେକରୁ ଘଣ୍ଟିଟିଏ ଛିଣ୍ଡି ସେହି ଅଣ୍ଡା ଉପରେ ଘୋଡ଼େଇ ହୋଇ ରହିଗଲା । ଯୁଦ୍ଧର ଘନଘଟା ପରେ ଲୋକେ ଯେତେବେଳେ ଘଣ୍ଟିଟିକୁ ଟେକିଦେଲେ, ତା ତଳେ ଥିବା ଚଢ଼େଇଛୁଆ ଆକାଶକୁ ଉଡ଼ିଗଲା । ଲାକ୍ଷଣିକ ଅର୍ଥରେ ଏହାର ପ୍ରୟୋଗ ଏହିପରି—'ତା ମାଲିକ ତାକୁ ଘଣ୍ଟ ଘୋଡ଼େଇ ରଖିଛି , ତାର କ୍ଷତି କରିବ କିଏ ?'

**ଚାରିଦଉଡ଼ିକଟା**— ପରିବାର, ସମାଜ, ସରକାର ଓ ଭଗବାନ—ଏ ଚାରିହେଁ ଯେପରିକି ମନୁଷ୍ୟକୁ ସଂସାରରେ ବାନ୍ଧି ରଖିଛନ୍ତି । ମାତ୍ର ଯେ ଏ ଚାରିପକ୍ଷଙ୍କୁ ଭ୍ରୂକ୍ଷେପ ନ କରି ନିଜ ମନମୁଖି କାମ କରେ, ତାକୁ 'ଚାରିଦଉଡ଼ିକଟା' କହନ୍ତି ।

**ଜଡ଼ଭରତ**— ଏ କଥାଟି ଏକ ପୌରାଣିକ ଉପାଖ୍ୟାନରୁ ଆସିଛି । ଭାଗବତରେ ଅଛି ରାଜା ଭରତ ବାନପ୍ରସ୍ଥ ଜୀବନରେ ଏକ ହରିଣ ପୋଷିଥିଲେ । ତା ପ୍ରତି ତାଙ୍କର ଏତେ ଶ୍ରଦ୍ଧା ଥିଲା ଯେ ମୃତ୍ୟୁକାଳରେ ସେ ଈଶ୍ୱରଙ୍କ ନାମ ନ ନେଇ ତାରି କଥା ଭାବୁଥିଲେ । ତେଣୁ ମଲାପରେ ସେ ହରିଣ ଜନ୍ମ ପାଇଲେ । ମାତ୍ର ପୂର୍ବ ଜନ୍ମର ପୁଣ୍ୟ ଫଳରୁ ସେ ପୁଣି ବ୍ରାହ୍ମଣ ଘରେ ଜନ୍ମ ହେଲେ । ଏହି ଅବସ୍ଥାରେ ସେ ସଂସାର ବନ୍ଧନରୁ ମୁକ୍ତି ପାଇବାପାଇଁ ସର୍ବଦା ମୌନ ରହୁଥିବାରୁ ଲୋକମାନେ ତାଙ୍କୁ 'ଜଡ଼ଭରତ' କହୁଥିଲେ । ଏହାର ପ୍ରୟୋଗ ଏହିପରି—ପୁଅ ମଲାଦିନଠାରୁ ସେ ଜଡ଼ଭରତ ପାଲଟି ଯାଇଛି ।

**ତିନି ତୁଣ୍ଡରେ ଛେଳି କୁକୁର**— ଗୋଟିଏ ଗଳ୍ପରୁ ଏ ପ୍ରବଚନଟି ଗୃହୀତ । ଥରେ ଜଣେ ଲୋକ ହାଟରୁ ଛେଳିଟିଏ କିଣି ଘରକୁ ଯାଉଥିଲା । ବାଟରେ ତିନିଜଣ ଚୋର ତାଠାରୁ ଛେଳିଟି ନେବାପାଇଁ ଏକ କୌଶଳ କଲେ । ପ୍ରତ୍ୟେକେ ତାକୁ ଭିନ୍ନ ଭିନ୍ନ ସ୍ଥାନରେ ଭେଟି ଥଟ୍ଟା କରି କହିଲେ ଯେ ସେ ଠକାମିରେ ପଡ଼ି ଗୋଟାଏ କାଳିଆ କୁକୁରକୁ ଛେଳି ମନେ କରି କିଣି ଆଣିଛି । ତିନିଜଣଙ୍କଠାରୁ ଏକା ପ୍ରକାର କଥା ଶୁଣି, ସେ ତାକୁ ସତ ବରିର ଛେଳିଟିକୁ ଛାଡ଼ିଦେଇ ଚାଲିଗଲା । ତାପରେ ଚୋରମାନେ ଆନନ୍ଦରେ ଛେଳିଟିକୁ ନେଲେ । ବହୁ ମତରେ ପ୍ରଭାବିତ ହୋଇ ଲୋକ ନିଜକୁ ଭୁଲିଗଲେ ଏହା କୁହାଯାଏ ।

**ତିନି ପାଞ୍ଜିରୁ ଯିବା**— ମନୁଷ୍ୟ ସାଧାରଣତଃ ତିନୋଟି ପାଞ୍ଜିକୁ ମାନେ ଓ ବିଶ୍ୱାସ କରେ — ଜମିଦାର ବା ସରକାରଙ୍କ ପାଞ୍ଜି, ଅବଧାନଙ୍କ ପାଞ୍ଜି ଓ ଚିତ୍ରଗୁପ୍ତଙ୍କ ପାଞ୍ଜି । ପ୍ରଥମଟିରେ ଜମିଜମା ହିସାବ, ଦ୍ୱିତୀୟଟିରେ ଦିନ, ମାସ, ବର୍ଷ ଗଣନା ଓ ରାଶିଫଳ ଏବଂ ତୃତୀୟଟିରେ ପାପପୁଣ୍ୟ ହିସାବ ଥାଏ । ଯେଉଁ ଲୋକ ପୃଥିବୀରୁ ନିଶ୍ଚିହ୍ନ ବା ମୂଳପୋଛ ହୋଇଯାଏ, ସେ ତିନି ପାଞ୍ଜିରୁ ଗଲା ବୋଲି କହନ୍ତି ।

**ତ୍ରିଶଙ୍କୁ ଅବସ୍ଥା**— ଆଗେଇ ହେଉନାହିଁ କି ପଛେଇ ହେଉନାହିଁ— ଏହି ସ୍ଥିତାବସ୍ଥା । ପୁରାଣରେ ଅଛି, ଅଯୋଧ୍ୟାର ରାଜା ତ୍ରିଶଙ୍କୁ ସଶରୀରରେ ସ୍ୱର୍ଗକୁ ଯିବା ଇଚ୍ଛାରେ ଯଜ୍ଞ କରିବାରୁ କୁଳଗୁରୁ ବଶିଷ୍ଠ ଓ ତାଙ୍କ ପିଲାମାନେ ତାଙ୍କୁ ବାରଣ କଲେ । ତେଣୁ ସେ ବିଶ୍ୱାମିତ୍ରଙ୍କ ସାହାଯ୍ୟ ଭିକ୍ଷା କଲେ । ଋଷି ପ୍ରୀତ ହୋଇ ତାଙ୍କୁ ସ୍ୱର୍ଗକୁ ପଠାଇଲେ, ମାତ୍ର ଦେବତାମାନେ ସେଥିରେ ବାଧା ଦେବାରୁ ରାଜା ତଳକୁ ଖସିଲେ । ବିଶ୍ୱାମିତ୍ର ରାଗିଯାଇ ଆଉ ଏକ ସ୍ୱର୍ଗ ସୃଷ୍ଟି କରିବାକୁ ବସିବାରୁ ଦେବତାମାନେ ବାଧ୍ୟ ହୋଇ ରାଜାଙ୍କୁ ଅଧବାଟରେ ରହିବାପାଇଁ ଅନୁମତି ଦେଲେ । ରାଜା ତ୍ରିଶଙ୍କୁ ସେହିଦିନୁ ସ୍ୱର୍ଗ ଓ ମର୍ତ୍ତ୍ୟର ମଧ୍ୟସ୍ଥଳରେ ନକ୍ଷତ୍ରମଣ୍ଡଳରେ ରହିଛନ୍ତି ।

**ନଈ ନ ଦେଖି ଲଙ୍ଗଳା**— ଭଲ କରି ନ ବୁଝି ନ ଶୁଝି ହଠାତ୍ ବିଚଳିତ ହୋଇ କର୍ତ୍ତବ୍ୟ ତୁଟିବା । ଜଣେ ବାଟୋଇର ନଈ ପାରି ହେବା ଦରକାର । ନଈରେ ଅଳ୍ପ ପାଣି ଥିଲା, ଲୁଗା ତିନ୍ତି ନ ଥାନ୍ତା । ମାତ୍ର ସେ ଭାବିଲା ବେଶି ପାଣି ଅଛି; ତେଣୁ କାଳେ ଲୁଗା ତିନ୍ତିଯିବ ଭାବି ସେ ଲଙ୍ଗଳା ହୋଇ ପାଣିରେ ପଶିଲା । ତାପରେ ? ···ହାସ୍ୟାସ୍ପଦ ଅବସ୍ଥା !

**ନାଗ ଚୁଚୁନ୍ଦ୍ରାକୁ ଧରିବା ଅବସ୍ଥା**— ଉଭୟ ବିପଦରେ ପଡ଼ି ହତବୁଦ୍ଧି ହେବା । ଶୁଣାଯାଏ, ନାଗ ସାପ ଚୂଚୁନ୍ଦ୍ରାକୁ ଧରିଲେ ତାର ଏହି ଅବସ୍ଥା ହୁଏ । ଚୂଚୁନ୍ଦ୍ରା ଦେହର ଗନ୍ଧ ଯୋଗୁ ତାକୁ ସେ ଗିଳିପାରେ ନାହିଁ । ଛାଡ଼ି ବି ପାରେ ନାହିଁ, କାରଣ ଛାଡ଼ିଦେଲେ ତାର ଆଖି ଫୁଟିଯାଏ ବୋଲି ଲୋକେ କହନ୍ତି ।

**ନିଦାବିଷ୍ଟୁ**— ଉଦାସୀନ । ନିଜକୁ ବିଷ୍ଣୁ ବୋଲି ପରିଚୟ ଦେଉଥିବା ଜଣେ ଲୋକକୁ ନୃସିଂହପୁରାଣରେ 'ନିଦାବିଷ୍ଟୁ' ଆଖ୍ୟା ଦିଆଯାଇଛି । (ତାକୁ ଯେତେ ଯାହା କହିଲେ ବି ସେ ଶୁଣୁନାହିଁ; ନିଦାବିଷ୍ଟୁ ହୋଇ ବସିଛି । )

**ପୋଥି ବାଇଗଣ**— ଶାସ୍ତ୍ର ନିୟମକୁ ସବୁବେଳେ ମାନିଲେ ଚଳିହେବ ନାହିଁ— ଏହି ମତର ପୋଷକତା କରୁଥିବା ହାସ୍ୟୋଦ୍ଦୀପକ ଗଳ୍ପରୁ ଗୃହୀତ । ଜଣେ ପଣ୍ଡିତ ଥରେ ନିଜ ବାଡ଼ିରୁ କିଛି ଧଳା ବାଇଗଣ ତୋଳି ତରକାରି କରିବାକୁ ନେଉଥିଲେ । ତାହା ଦେଖି ତାଙ୍କ ପୁଅ କହିଲା, "ବାପା, ଲାଉ ଓ ଧଳା ବାଇଗଣ ଖାଇବାକୁ ପରା ଶାସ୍ତ୍ରରେ ମନା ଅଛି (ଅଲାବୁ ଶ୍ୱେତବାର୍ତ୍ତାକୀ) ।" ପଣ୍ଡିତେ କହିଲେ, "ପୋଥି ବାଇଗଣ ପାଇଁ ସେ ନିୟମ । ଏ ପରା ବାଡ଼ି ବାଇଗଣ ।"

**ପ୍ରଣବରୁ ଅଶୁଦ୍ଧ**— ଆରମ୍ଭରୁ ଭୁଲ୍ ହେଲେ ଏପରି କୁହାଯାଏ । ମନ୍ତ୍ର ପଢ଼ିବା ପୂର୍ବରୁ ପ୍ରଥମେ 'ପ୍ରଣବ' ବା ଓଁ ଉଚ୍ଚାରଣ କରିବା ବିଧି । କୌଣସି କାର୍ଯ୍ୟାରମ୍ଭ-ବେଳେ ପ୍ରଥମରୁ ଭୁଲ୍ ହେଲେ ମନେ କରାଯାଏ ଯେ ତାହା ଭଲ ଫଳ ଦେବ ନାହିଁ । (ଏ ତ ପ୍ରଣବରୁ ଅଶୁଦ୍ଧ ହେଲାଣି । ପଛକୁ ଯାହା ହେବ ଜଣାପଡ଼ୁଛି । )

**ଭାଲୁ ଧରାଇବା**— ଅନ୍ୟକୁ ବିପଦ ମୁହଁକୁ ଠେଲିଦେଇ ନିଜେ ଖସିଯିବା । କଥା ଅଛି, ଜଣେ ଲୋକ ବଣରେ ଭାଲୁ ହାବୁଡ଼ରେ ପଡ଼ିଲା । ସେ ଲୋକ ଗୋଟିଏ ଗଛ ଉହାଡରେ ଲୁଚି ଯାଉଁ ଯାଉଁ ଭାଲୁ ତା ଦୁଇ ହାତକୁ ଧରି ପକାଇଲା । ତହୁଁ ଦୁହେଁ ହାତ ଧରାଧରି ହୋଇ ଗଛ ଚାରିପଟେ ବୁଲିଲେ । ବୁଲୁବୁଲୁ ଲୋକଟିର ଅଣ୍ଟାରେ ଥିବା କିଛି ଟଙ୍କା ତଳେ ବୁଣି ହୋଇଗଲା । ଏତିକିବେଳେ ଆଉ ଜଣେ ଲୋକ ଏ ଦୃଶ୍ୟ ଦେଖୁଥିବାବେଳେ ପ୍ରଥମ ବ୍ୟକ୍ତି ତାକୁ କହିଲା, "ଯଦି ଟଙ୍କା ପାଇବାକୁ ଇଚ୍ଛା, ଆ । ଏ ଭାଲୁକୁ ଧରି ବୁଲିଲେ ଯେତେ ଇଚ୍ଛା ଟଙ୍କା ପାଇବୁ ।" ବୋକା ଲୋକଟା ଟଙ୍କା ଲୋଭରେ ଆସି ଭାଲୁର ହାତ ଧରିବାରୁ ପ୍ରଥମ ବ୍ୟକ୍ତି ଟଙ୍କାତକ ଗୋଟାଇନେଇ ପଳାଇଗଲା ।

**ହୁଙ୍କାପିଠା**— ଅପରିଣାମଦର୍ଶୀର କାର୍ଯ୍ୟ ପ୍ରତି ପ୍ରଯୋଜ୍ୟ । ପୂର୍ବରୁ ସତର୍କ ନ ହୋଇ ହୁଙ୍କା ଭାଙ୍ଗିଲେ, ସେଥିରେ ଆଶ୍ରୟ ନେଇଥିବା ସାପ ବାହାରି ଆସି ସେହି ଲୋକକୁ କାମୁଡ଼ିପାରେ । ତେଣୁ ଏପରି ହୁଣ୍ଡାଳିଆ କାମ କରିବା ଉଚିତ ନୁହେଁ ।

